ଓଁପ୍ରକାଶ ଗ୍ରନ୍ଥମାଳା

# ୧ ଈଶାବାସ୍ୟୋପନିଷଦ




**AN**
**AUM PRAKASHANA MANDIRA**
**PRESENTATION**

ଓମ୍ ପ୍ରକାଶନ ମନ୍ଦିର

Scripture Series

# ଈଶାବାସ୍ୟୋପନିଷଦ

ସଂପାଦନା :

ଶ୍ରୀ ଶରତ କୁମାର କର



ଓମ୍ ପ୍ରକାଶନ ମନ୍ଦିର, ପୁରୀ



# ସମର୍ପଣ

**ବିଶ୍ୱାନି ଦେବ ସବିତର୍ଦୁରିତାନି ପରା ସୁବ ।**

**ଯଭଦ୍ରଂ ତନ୍ନ ଆ ସୁବ ।।**

(ଯଜୁଃ. ୩୦/୩)

ହେ ଦିବ୍ୟ ଗୁଣଧାରୀ ଜଗତର ଜନକ !

ଆମର ସମଗ୍ର ଦୁଃଖକୁ ଦୂର କରିଦିଅନ୍ତୁ

ଏବଂ ଆମ୍ କଲ୍ୟାଣକାରୀଙ୍କର ଦୁଃଖ ସମୁଦାୟକୁ

ଦୂର କରିଦିଅନ୍ତୁ ଅର୍ଥାତ୍ ଜଗତର ସମସ୍ତ ପ୍ରାଣୀଙ୍କର

ଦୁଃଖ ଦୂର କରିଦିଅନ୍ତୁ ।

※ ※ ※

# ଉପକ୍ରମଣିକା

ଏହି ଉପନିଷଦଟି ଶୁକ୍ଳଯଜୁର୍ବେଦ ସଂହିତାର ଚାଳିଶିତମ ଅଧ୍ୟାୟ ଅନ୍ତର୍ଗତ । ମନ୍ତ୍ରଭାଗର ଅଂଶ ହୋଇଥିବାରୁ ଏହାର ବିଶେଷ ମହତ୍ତ୍ୱ ରହିଛି । ଏହାକୁ ସର୍ବପ୍ରଥମ ଉପନିଷଦ ଭାବରେ ମଧ୍ୟ ଗ୍ରହଣ କରାଯାଏ । ଶୁକ୍ଳଯଜୁର୍ବେଦର ପ୍ରଥମ ଅଣଚାଳିଶଗୋଟି ଅଧ୍ୟାୟରେ କର୍ମକାଣ୍ଡର ନିରୂପଣ ହୋଇଥିବା ସ୍ଥଳେ ଏହି ଚାଳିଶିତମ ଅଧ୍ୟାୟଟି ଅନ୍ତିମ କାଣ୍ଡ ଅଟେ । ଏଥିରେ ଗାୟନର ମଧୁରତା ତଥା ଭଗବତ୍‌ତତ୍ତ୍ୱ ବିଶେଷକରି ଆଲୋଚନା ହୋଇଥିବା କାରଣରୁ ଏହାର ପ୍ରାଧାନ୍ୟ ସର୍ବାଧିକ ଅଟେ । ଏହାର ପ୍ରଥମ ମନ୍ତ୍ରରେ **'ଈଶାବାସ୍ୟାମ୍'** ପଦ ଆସୁଥିବାରୁ ଏହାର ଏଭଳି ନାମକରଣ ହୋଇଥାଇପାରେ ।

ଈଶାବାସ୍ୟୋପନିଷଦର ଅନେକ ଭାଷ୍ୟ ଓ ଟୀକା ଉପଲବ୍ଧ । ଅନେକ ଆଚାର୍ଯ୍ୟ ଏହା ଉପରେ ଭାଷ୍ୟ, ଟୀକା, ଟିପ୍ପଣୀ ଆଦି ପ୍ରଦାନ କରିଛନ୍ତି । ଏହାର ଉପାଦେୟତାକୁ ହୃଦୟଙ୍ଗମ କରିଛନ୍ତି । ତନ୍ମଧ୍ୟରୁ ଶାଙ୍କରଭାଷ୍ୟ, ରାମାନୁଜ ଭାଷ୍ୟ, ମାଧବ ଭାଷ୍ୟ ଆଦି ପ୍ରମୁଖ । ବିଶଦ ପାଠ ଓ ପ୍ରବେଶ ପାଇଁ ଅବଶ୍ୟ ସେଗୁଡିକ ଦ୍ରଷ୍ଟବ୍ୟ । ପାଠକମାନଙ୍କ ସୁବିଧା ପାଇଁ ସାମାନ୍ୟତମ ବ୍ୟାଖ୍ୟା ଓ ଅର୍ଥକୁ ସହଜରେ ବୋଧ କରାଇବାକୁ ଏଭଳି ପଦକ୍ଷେପ ନିଆଯାଇ ସମସ୍ତ ଉପନିଷଦ ଗୁଡିକ ଏଭଳି ସରଳ ଭାବରେ ପ୍ରକାଶ କରାଯାଉଛି ।

※ ※ ※

## —ଶାନ୍ତିପାଠ —

[Peace Invocation]

ଓଁ ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ
ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ ।
ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ
ପୂର୍ଣ୍ଣମେବା ବଶିଷ୍ୟତେ ।।
ଓଁ ଶାନ୍ତିଃ ! ଶାନ୍ତିଃ !! ଶାନ୍ତିଃ !!!

**ଅନ୍ୱୟ :—** ଓଁ = ସଚ୍ଚିଦାନନ୍ଦଘନ, ଅଦଃ = ସେହି ପରବ୍ରହ୍ମ, ପୂର୍ଣ୍ଣମ୍ = ସବୁପ୍ରକାରେ ପୂର୍ଣ୍ଣ ଅଟନ୍ତି, ଇଦମ୍ = ଏହି (ଜଗତ୍ ମଧ୍ୟ), ପୂର୍ଣ୍ଣମ୍ = ପୂର୍ଣ୍ଣ (ହିଁ) ଅଟେ, (କାହିଁକି ନାଁ) ପୂର୍ଣ୍ଣାତ୍ = ସେହି ପୂର୍ଣ୍ଣ(ପରବ୍ରହ୍ମ)ଙ୍କଠାରୁ ହିଁ, ପୂର୍ଣ୍ଣମ୍ = ଏହି ପୂର୍ଣ୍ଣ, ଉଦଚ୍ୟତେ = ଉତ୍ପନ୍ନ ହୋଇଛନ୍ତି, ପୂର୍ଣ୍ଣସ୍ୟ = ପୂର୍ଣ୍ଣରୁ, ପୂର୍ଣ୍ଣମ୍ = ପୂର୍ଣ୍ଣକୁ, ଆଦାୟ = କାଢିନେଲାପରେ(ମଧ୍ୟ), ପୂର୍ଣ୍ଣମ୍ = ପୂର୍ଣ୍ଣ, ଏବ = ହିଁ, ଅବଶିଷ୍ୟତେ = ଅବଶିଷ୍ଟ ରହେ ।

**ମନ୍ତ୍ରାର୍ଥ**:— ଓଁ ରୂପକ ସଚ୍ଚିଦାନନ୍ଦଘନ ବିଗ୍ରହ ପରବ୍ରହ୍ମ ହିଁ ଅଟନ୍ତି । ସେ ସମସ୍ତ ପ୍ରକାରରେ ପୂର୍ଣ୍ଣ ହୋଇ ରହିଛନ୍ତି । ଏହା ଅର୍ଥାତ୍ ଜଗତ୍

ରୂପରେ ମଧ୍ୟ ପୂର୍ଣ୍ଣ ଅଟନ୍ତି । କାହିଁକି ନାଁ ସେହି ପୂର୍ଣ୍ଣ ପରବ୍ରହ୍ମଙ୍କ ଠାରୁ ଏହି ପୂର୍ଣ୍ଣର ଉତ୍ପନ୍ନ ହୋଇଛି । ପୂର୍ଣ୍ଣରୁ ପୂର୍ଣ୍ଣାଂଶ କିଛି ବାଦ୍ ଦେଇଦେଲେ ମଧ୍ୟ ତାହା ପୂର୍ଣ୍ଣ ହୋଇ ରହେ । ତେଣୁ ଏଠାରେ ସେହିଭଳି ପୂର୍ଣ୍ଣଙ୍କର ସ୍ମରଣ କରିବା ସଙ୍ଗେସଙ୍ଗେ ତ୍ରିବିଧତାପର ଶାନ୍ତି କାମନା କରାଯାଉଛି ।

**ସାମାନ୍ୟ ବ୍ୟାଖ୍ୟା** :— ସେହି ସଚ୍ଚିଦାନନ୍ଦଘନ ପରବ୍ରହ୍ମ ପୁରୁଷୋତ୍ତମ ସବୁ ପ୍ରକାରରେ ସଦାସର୍ବଦା ପରିପୂର୍ଣ୍ଣ ହୋଇ ରହିଛନ୍ତି । ଏହି ଜଗତ୍ ମଧ୍ୟ ସେହି ପରବ୍ରହ୍ମଙ୍କ ଦ୍ୱାରା ହିଁ ପୂର୍ଣ୍ଣ ଅଟେ, କାହିଁକି ନାଁ ଏହି ପୂର୍ଣ୍ଣ ସେହି ପୂର୍ଣ୍ଣ ପୁରୁଷୋତ୍ତମଙ୍କ ଠାରୁ ହିଁ ଉତ୍ପନ୍ନ ହୋଇଛି । ଏହିଭଳି ପରବ୍ରହ୍ମଙ୍କର ପୂର୍ଣ୍ଣତାରେ ଜଗତ୍ ପୂର୍ଣ୍ଣ ହୋଇରହିଛି, ଏଣୁ ତାହା ମଧ୍ୟ ପରିପୂର୍ଣ୍ଣ ଅଟେ । ସେହି ପୂର୍ଣ୍ଣବ୍ରହ୍ମଙ୍କ ଠାରୁ ପୂର୍ଣ୍ଣକୁ ବା ପୂର୍ଣ୍ଣ ଏକ ଅଂଶକୁ ନେଇ ଆସିଲେ ପୂର୍ଣ୍ଣ ହିଁ ଅବଶିଷ୍ଟ ରହେ ।

ସେହି ପୂର୍ଣ୍ଣବ୍ରହ୍ମ ଆଧିଭୌତିକ, ଆଧିଦୈବିକ ଓ ଆଧ୍ୟାତ୍ମିକ ତାପତ୍ରୟରୁ ଶାନ୍ତି ପ୍ରଦାନ କରନ୍ତୁ, ସେଥିପାଇଁ ଏଭଳି ପ୍ରାର୍ଥନା କରାଗଲା ।

※ ※ ※

# ଈଶାବାସ୍ୟୋପନିଷଦ

**ଓଁ ଈଶାବାସ୍ୟଂ ଇଦଂ ସର୍ବଂ**

**ଯତ୍‌କିଞ୍ଚ ଜଗତ୍ୟାଂ ଜଗତ୍ ।**

**ତେନ ତ୍ୟକ୍ତେନ ଭୂଞ୍ଜୀଥା ମା**

**ଗୃଧଃ କସ୍ୟ ସ୍ୱୀଦଧନମ୍ ।।୧।।**

**ଅନ୍ୱୟ :—** ଜଗତ୍ୟାମ୍ = ଅଖିଳ ବ୍ରହ୍ମାଣ୍ଡରେ, ଯତ୍ କିଂ ଚ = ଯାହା କିଛି ବି, ଜଗତ୍ = ଜଡ଼ଚେତନସ୍ୱରୂପ ଜଗତ ରହିଛି, ଇଦମ୍ = ଏହି, ସର୍ବମ୍ = ସମସ୍ତ, ଈଶା = ଈଶ୍ୱରଙ୍କ ଦ୍ୱାରା, ବାସ୍ୟମ୍ = ବ୍ୟାପ୍ତ ଅଟେ, ତେନ = ସେହି ଈଶ୍ୱରଙ୍କୁ ସାଥୀରେ ରଖି, ତ୍ୟକ୍ତେନ = ତ୍ୟାଗପୂର୍ବକ, ଭୁଞ୍ଜୀଥାଃ = (ତାହାକୁ)ଭୋଗକର, କସ୍ୟ ସ୍ୱିତ୍ = କାହାର ଅଟେ ଅର୍ଥାତ୍ କାହାର ମଧ୍ୟ ନୁହେଁ ।

**ମନ୍ତ୍ରାର୍ଥ :—** ଅଖିଳ ବ୍ରହ୍ମାଣ୍ଡରେ ଯାହା କିଛି ରହିଛି (ଅର୍ଥାତ୍ ଏହି ଜଡଚେ଼ତନ ସ୍ୱରୂପ ଜଗତ୍) ଯାହାକି ଈଶ୍ୱରଙ୍କ ଦ୍ୱାରା ବ୍ୟାପ୍ତ ଅଟେ ସେହି ଈଶ୍ୱରଙ୍କୁ ସାଥୀରେରଖି ତ୍ୟାଗପୂର୍ବକ ଉକ୍ତ ଜାଗତିକ ବସ୍ତୁମାନଙ୍କୁ ଭୋଗକର । ସେଥିରେ ଆସକ୍ତ ହୁଅନାହିଁ କାହିଁକି ନାଁ ଧନ, ଭୋଗ୍ୟ ପଦାର୍ଥ କାହାର ହୋଇପାରେ ! ଅର୍ଥାତ୍ ଏସବୁ କାହାର ନୁହେଁ ।।୧।।

**ସାମାନ୍ୟ ବ୍ୟାଖ୍ୟା**:— ସାଧାରଣ ମାନବପ୍ରତି ଉପନିଷଦୀୟ ବ୍ରହ୍ମଙ୍କର ସର୍ବପ୍ରଥମ ଓ ପବିତ୍ରତମ ଉପଦେଶ ବା ଆଦେଶ ଭାବରେ ଏହି ଶ୍ଳୋକକୁ ଗଣନା କରାଯିବା ବାଞ୍ଛନୀୟ । ତଦନୁସାରେ ଅଖିଳ ବିଶ୍ୱବ୍ରହ୍ମାଣ୍ଡରେ ଯାହାକିଛି ବି ବସ୍ତୁ ରହିଛି ଅର୍ଥାତ୍ ଏହି ଚରାଚରାତ୍ମକ ଜଗତରେ ଦୃଷ୍ଟି ପର୍ଯ୍ୟନ୍ତ ଯାହା କିଛି ବସ୍ତୁ ଆମ୍ଭକୁ ଦୃଶ୍ୟମାନ ହେଉଛି, ସେଗୁଡିକ ସେହି ପରମାତ୍ମାଙ୍କର ଅଟେ । ଯାହା କିଛି ଶୁଣୁଛେ, ଦେଖୁଛେ ଏବଂ ବ୍ୟବହାର କରୁଛେ, ସେସବୁ ସର୍ବାଧାର, ସର୍ବନିୟନ୍ତା, ସର୍ବାଧିପତି, ସର୍ବଶକ୍ତିମାନ, ସର୍ବଜ୍ଞ, ସର୍ବକଲ୍ୟାଣ ଗୁଣସ୍ୱରୂପ ପରମେଶ୍ୱରଙ୍କ ଠାରେ ପରିବ୍ୟାପ୍ତ ହୋଇ ରହିଛି । ସେଗୁଡିକ ତାଙ୍କରି ନିକଟରେ ପରିପୂର୍ଣ୍ଣ ଅଟେ ।[୪] ସେହି ଦୃଶ୍ୟମାନ ଜଗତରେ କିଞ୍ଚିତ୍ ମାତ୍ର ବସ୍ତୁ ମଧ୍ୟ ତାଙ୍କ ବ୍ୟତିରେକ ତିଷ୍ଠି ରହିବା ଅସମ୍ଭବ ।[୫] ଏହିଭଳି ବୁଝି ସେହି ଈଶ୍ୱରଙ୍କୁ ନିରନ୍ତର ନିଜ ଭିତରେ ଏବଂ ନିଜ ପାଖରେ ପରିକଳ୍ପନାକରି ଅର୍ଥାତ୍ ସର୍ବଦା ଆମ ସହିତ ରହିଛନ୍ତି ମନେକରି ଜଗତର ସମସ୍ତ ବସ୍ତୁକୁ ମମତା ଓ ଆସକ୍ତି ତ୍ୟାଗପୂର୍ବକ କର୍ତ୍ତବ୍ୟପାଳନ ଉଦ୍ଦେଶ୍ୟରେ ଅର୍ଥାତ୍ ବିଶ୍ୱରୂପକ ଈଶ୍ୱରଙ୍କର ପୂଜା ଭାବରେ ଭୋଗ କରାଯିବା ଦରକାର । ମନକୁ ବିଷୟାସକ୍ତ ନ କରାଇ ଉକ୍ତ ଭଗବତ୍ ବସ୍ତୁ ତୁମର କଲ୍ୟାଣ ସାଧନ କରୁଛି, ଏହାକୁ ଦୃଢଭାବରେ ବିଶ୍ୱାସକରି ଏହି ସଂସାରକୁ ସେବନ କରାଯାଇପାରେ ।[୬] ବସ୍ତୁତଃ ଦୃଶ୍ୟମାନ ଭୋଗ୍ୟପଦାର୍ଥ ଗୁଡିକ କାହାର ବି ନୁହେଁ ଏହା ଦୃଢ ନିଶ୍ଚିତ କରିନେବା ଉଚିତ । ଏଭଳି କରିବା ଦ୍ୱାରା ମନୁଷ୍ୟ ମନରେ ମମତା ଓ ଆସକ୍ତି

କ୍ଷୁଣ୍ଣ ହୁଏ ଆଉ ଏହି ଆସକ୍ତି କ୍ଷୁଣ୍ଣଭାବରେ ପରମେଶ୍ୱରଙ୍କର ଏ ସମସ୍ତ ବସ୍ତୁ ମନେକରି ତାଙ୍କୁ ପ୍ରସନ୍ନ କରାଇବାପାଇଁ ସେଗୁଡ଼ିକର ଉପଯୋଗ କରିବା ଅତ୍ୟାବଶ୍ୟକ ।।୧।।

**କୁର୍ବନ୍ନେବେହ କର୍ମାଣି ଜିଜୀବିଷେ ଚ୍ଛତଂ୍ସମାଃ ।**
**ଏବଂ ତ୍ୱୟି ନାନ୍ୟଥେତୋଦ୍ଧସ୍ତି**
**ନ କର୍ମ ଲିପ୍ୟତେ ନରେ ।।୨।।**

**ଅନ୍ୱୟ** :— ଇହ = ଏହି ଜଗତରେ, କର୍ମାଣି = ଶାସ୍ତ୍ରନିୟତ କର୍ମକୁ, କୁର୍ବନ୍ = (ଈଶ୍ୱରପୂଜାର୍ଥେ) କରୁ କରୁ, ଏବ = ହିଁ, ଶତମ୍ ସମାଃ = ଶତବର୍ଷ ପର୍ଯ୍ୟନ୍ତ, ଜିଜୀବିଷେତ୍ = ବଞ୍ଚିବାର ଇଚ୍ଛା କରିବା ଦରକାର, ଏବମ୍ = ଏହିଭଳି (ତ୍ୟାଗଭାବରେ, ପରମେଶ୍ୱରଙ୍କ ପାଇଁ), କର୍ମ = କରାଯାଉଥିବା କର୍ମ, ତ୍ୱୟି = ତୁମକୁ, ନରେ = ମନୁଷ୍ୟଠାରେ, ନ ଲିପ୍ୟତେ = ଲିପ୍ତ ହୁଏନାହିଁ, ଇତଃ = ଏହାଠାରୁ (ଭିନ୍ନ), ଅନ୍ୟଥା = ଅନ୍ୟ କୌଣସିପ୍ରକାର ଅର୍ଥାତ୍ ମାର୍ଗ, ନ ଅସ୍ତି = ନାହିଁ (ଯଦ୍ଧାରା ମନୁଷ୍ୟ କର୍ମ–ବନ୍ଧନରୁ ମୁକ୍ତ ହୋଇପାରିବ) ।।

**ମନ୍ତ୍ରାର୍ଥ** :—ଏହି ଜଗତରେ ଶାସ୍ତ୍ରନିୟତ କର୍ମମାନଙ୍କୁ ଈଶ୍ୱରପୂଜା ଉଦ୍ଦେଶ୍ୟରେ ଆଚରଣ କରୁ କରୁ ଶତବର୍ଷ ବ୍ୟାପୀ ବଞ୍ଚିବାର ଇଚ୍ଛା କରିବା ବାଞ୍ଛନୀୟ । ଏହିଭଳି ଅର୍ଥାତ୍ ତ୍ୟାଗ ଭାବରେ ପରମେଶ୍ୱରଙ୍କ ପାଇଁ କରାଯାଉଥିବା କର୍ମ ମନୁଷ୍ୟମାନଙ୍କୁ ଲିପ୍ତ କରାଇବ ନାହିଁ । ଏହା ଭିନ୍ନ ଅନ୍ୟ କୌଣସି ମାର୍ଗ ନାହିଁ, ଯାହା ସାହାଯ୍ୟରେ ମନୁଷ୍ୟ କର୍ମବନ୍ଧନରୁ ମୁକ୍ତ ହୋଇପାରିବ ।

**ସାମାନ୍ୟ ବ୍ୟାଖ୍ୟା :—** ପୂର୍ବ ମନ୍ତ୍ରର କଥନାନୁସାରେ ଜଗତର ଏକମାତ୍ର କର୍ତ୍ତା, ଧର୍ତ୍ତା, ହର୍ତ୍ତା ପରମେଶ୍ୱରଙ୍କୁ ସତତ ସ୍ମରଣକରି ସବୁକିଛି ତାଙ୍କର ମନେକରି, ତାଙ୍କରି ପୂଜାରେ ଶାସ୍ତ୍ରନିୟତ କର୍ତ୍ତବ୍ୟ କର୍ମମାନଙ୍କୁ ଆଚରଣକରି ଶତବର୍ଷ ପର୍ଯ୍ୟନ୍ତ ବଞ୍ଚିବାର ଇଚ୍ଛା କର । ଏହିଭଳି ନିଜର ସମ୍ପୂର୍ଣ୍ଣ ଜୀବନକୁ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ସମର୍ପଣ କରିଦିଅ । ଏଭଳି ମନେକର କି ଶାସ୍ତ୍ରୋକ୍ତ କର୍ମକୁ (ଯାହା ସ୍ୱ-କର୍ମ ଭାବରେ ନିର୍ଦ୍ଦେଶିତ ହୋଇଛି) ଆଚରଣକରି ଜୀବିକା ନିର୍ବାହକରିବା ପରମେଶ୍ୱରଙ୍କର ପୂଜା ସଙ୍ଗେ ସମାନ । ତାହା କେବେହେଲେ ନିଜ ପାଇଁ ହୋଇ ନପାରେ । ଯେହେତୁ ଭୋଗ୍ୟବସ୍ତୁ ଭୋଗକରିବା ପାଇଁ ହୋଇନାହିଁ, ତାହା କିଭଳି ସ୍ୱାର୍ଥ ହେବ ! ଏହିଭଳି ଜୀବିକା ନିର୍ବାହକରିବା ଦ୍ୱାରା ଯେଉଁ କର୍ମ ତୁମ ଦ୍ୱାରା ସମ୍ପନ୍ନ ହେବ, ତାହା ତୁମକୁ ବନ୍ଧନରେ ପକାଇବ ନାହିଁ । କର୍ମ କରି କର୍ମରେ ଲିପ୍ତ ନହେବା ହେଉଛି ଏକମାତ୍ର ମାର୍ଗ, ଯାହା ବ୍ୟତୀତ ଅନ୍ୟ କୌଣସି ମାର୍ଗ କର୍ମବନ୍ଧନରୁ ମୁକ୍ତ କରାଇପାରିବ ନାହିଁ ।୨

**ଅସୁର୍ଯ୍ୟା ନାମ ତେ ଲୋକା**
**ଅନ୍ଧେନ ତମସାଦ୍ଧବୃତାଃ ।**
**ତାଁସ୍ତେ ପ୍ରେତ୍ୟାଭିଗଚ୍ଛନ୍ତି**
**ଯେ କେ ଚାତ୍ମହନୋ ଜନାଃ ।। ୩।।**

**ଅନ୍ୱୟ :—** ଅସୁର୍ଯ୍ୟାଃ = ଅସୁରମାନଙ୍କର, (ଯିଏ)ନାମ = ପ୍ରସିଦ୍ଧ, ଲୋକାଃ = ନାନା ପ୍ରକାରର ଯୋନି ଏବଂ ନରକରୂପ ଲୋକ ଅଟେ,

ତେ = ସେମାନେ ସମସ୍ତେ, ଅନ୍ଧେନ ତମସା = ଅଜ୍ଞାନ ତଥା ଦୁଃଖକ୍ଳେଶରୂପ ମହାନ୍ ଅନ୍ଧକାରରେ, ଆବୃତାଃ = ଆଚ୍ଛାଦିତ, ଯେ କେ ଚ = ଯେ କେହି ବି, ଆତ୍ମହନଃ = ଆତ୍ମାହତ୍ୟା କାରୀ, ଜନାଃ = ମନୁଷ୍ୟ, ତେ = ସେମାନେ, ପ୍ରେତ୍ୟ = ମୃତ୍ୟୁ ଅନନ୍ତର, ତାନ୍ = ସେହି ଭୟଙ୍କର ଲୋକକୁ, ଅଭିଗଚ୍ଛନ୍ତି = ବାରମ୍ବାର ପ୍ରାପ୍ତ ହୋଇଥାନ୍ତି ।

**ମନ୍ତ୍ରାର୍ଥ** :— ଅସୁରମାନଙ୍କ ପାଇଁ ଯାହା ପ୍ରସିଦ୍ଧ ଅର୍ଥାତ୍ ନାନା ପ୍ରକାରର ଯୋନି ଏବଂ ନରକରୂପୀ ଲୋକ ସବୁକିଛି ଅଜ୍ଞାନ ତଥା ଦୁଃଖକ୍ଳେଶରୂପୀ ମହାନ ଅନ୍ଧକାର ଦ୍ୱାରା ଆଚ୍ଛାଦିତ ହୋଇରହିଛି । ଯେ କେହି ଆତ୍ମଘାତୀ ବ୍ୟକ୍ତି ଅଛନ୍ତି, ସେମାନେ ମୃତ୍ୟୁ ଅନନ୍ତର ଉପରୋକ୍ତ ସେହି ଭୟଙ୍କର ଲୋକକୁ ବାରମ୍ବାର ଗମନ କରିଥାନ୍ତି ।

**ସାମାନ୍ୟ ବ୍ୟାଖ୍ୟା** :— ମାନବ ଶରୀର ଅନ୍ୟ ସମସ୍ତ ଶରୀରଠାରୁ ଶ୍ରେଷ୍ଠ ଅଟେ । ପରମ ଦୁର୍ଲ୍ଲଭ ମଧ ଅଟେ । ତାହା ଜୀବକୁ ଭଗବାନଙ୍କର ବିଶେଷକୃପା କାରଣରୁ ଜନ୍ମ-ମୃତ୍ୟୁରୂପ ସଂସାର ସମୁଦ୍ରରୁ ତରିବାପାଇଁ ପ୍ରାପ୍ତ ହୋଇଛି । ଏହିଭଳି ଶରୀରକୁ ପ୍ରାପ୍ତ ହୋଇ ଯେଉଁ ମନୁଷ୍ୟ ନିଜର କର୍ମମାନଙ୍କୁ ଈଶ୍ୱର ପୂଜାର୍ଥେ ସମର୍ପଣ କରେ ନାହିଁ ଆଉ କାମୋପଭୋଗକୁ ଜୀବନର ପରମ ଧ୍ୟେୟ ମନେକରି ବିଷୟମାନଙ୍କରେ ଆସକ୍ତ ରହେ, ସେ ବସ୍ତୁତଃ ଆତ୍ମଘାତୀ ବୋଲାଇଥାଏ । ଏହିଭଳି ଆତ୍ମଘାତୀ ବ୍ୟକ୍ତି ନିଜର ପତନ ନିଜେ ହିଁ କରାଇଥାଆନ୍ତି । ସେମାନେ ନିଜ ଜୀବନକୁ ହରାନ୍ତି ନାହିଁ ବରଂ ନିଜକୁ ଅଧିକ କର୍ମବନ୍ଧନରେ ଜଡିତ କରାଇଥାନ୍ତି । ଏହି କାମ ଭୋଗ

ପରାୟଣ ଲୋକମାନଙ୍କୁ —ସେ ଯିଏ ହୁଅନ୍ତୁ ନାଁ କାହିଁକି, ଯେତେ ବଡ ନାମଯଶର ଅଧିକାରୀ ହୁଅନ୍ତୁ ନାଁ କାହିଁକି ମରିବା ପରେ ସେମାନଙ୍କୁ କର୍ମଫଳ ଭୋଗକରିବା ପାଇଁ ବାରମ୍ବାର କୁକୁର-ଶୂକର, କୀଟ-ପତଙ୍ଗ ଆଦି ହୀନ ଯୋନିରେ ଶୋକସନ୍ତାପ ପୂର୍ଣ୍ଣ ଆସୁରୀ ସ୍ୱଭାବ ଯୁକ୍ତହୋଇ ଅବତରିତ ହେବାକୁ ହୋଇଥାଏ ।' ଏହା ଅସୁର ସ୍ୱଭାବଯୁକ୍ତ ଦୁଷ୍ଟମାନଙ୍କ ପାଇଁ ନିଶ୍ଚିତ ଫଳ ଭାବରେ ଉପନିଷଦ ବ୍ରହ୍ମ ନିର୍ଦ୍ଦିଷ୍ଟ କରିଛନ୍ତି । ସେମାନେ ଅଜ୍ଞାନରୂପ ଅନ୍ଧକାରରେ ଆଚ୍ଛାଦନ ହୋଇଥିବା କାରଣରୁ ଏହିଭଳି ଆସୁରୀ ସ୍ୱଭାବଯୁକ୍ତ ହୁଅନ୍ତି ଏବଂ ଭୟାନକ ନର୍କଗମନ କରିଥାନ୍ତି ।

**ଅନେଜଦେକଂ ମନସୋ ଜବୀୟୋ**
**ନୈନଦ୍ଦେବା ଆପ୍ନୁବନ୍ ପୂର୍ବମର୍ଷତ୍ ।**
**ତଦ୍ଧାବତୋଽନ୍ୟାନତ୍ୟେତି ତିଷ୍ଠତ୍ତ**
**ସ୍ମିନ୍ନପୋ ମାତରିଶ୍ୱା ଦଧାତି ।।୪।।**

**ଅନ୍ୱୟ :—** ତତ୍= ସେହି ପରମେଶ୍ୱର, ଅନେଜତ୍ = ଅଚଳ, ଏକମ୍ = ଏକ, (ଏବଂ) ମନସଃ = ମନରେ (ମଧ୍ୟ), ଜବୀୟ = ଅଧିକ ତୀବ୍ର ଗତିଯୁକ୍ତ ଅଟନ୍ତି, ପୂର୍ବମ୍ = ସମସ୍ତଙ୍କର ଆଦି, ଅର୍ଷତ୍ = ଜ୍ଞାନସ୍ୱରୂପ ଅବା ସର୍ବଜ୍ଞ ଅଟନ୍ତି,ଏନତ୍ = ଏହି ପରମେଶ୍ୱରଙ୍କୁ, ଦେବାଃ = ଇନ୍ଦ୍ରାଦି ଦେବତା ମଧ୍ୟ, ନ ଆପ୍ନୁବନ୍ = ପ୍ରାପ୍ତ ହୋଇପାରିଲେ ନାହିଁ କି ଜାଣିପାରିଲେ ନାହିଁ, ତତ୍ = ସେବାନେ (ପରବ୍ରହ୍ମ ପୁରୁଷୋତ୍ତମ), ଅନ୍ୟାନ୍ = ଅନ୍ୟ, ଧାବତଃ = ଧାବମାନ, ତିଷ୍ଠତ୍ = (ସ୍ୱୟଂ) ସ୍ଥିତ

ହେଲେ ମଧ୍ୟ, ଅତ୍ୟେତି = ଅତିକ୍ରମଣ କରିଯାଆନ୍ତି, ତସ୍ମିନ୍ = ତାଙ୍କର ଉପସ୍ଥିତିରେ-- ତାଙ୍କ ସତ୍ତା ଶକ୍ତିରେ, ମାତରିଶ୍ୱା = ବାୟୁ ଆଦି ଦେବତା, ଅପଃ = ଜଳବର୍ଷା ଆଦି କ୍ରିୟା, ଦଧାତି = ସମ୍ପାଦନ କରିବାରେ ସମର୍ଥ ହୋଇଥାନ୍ତି ।

**ମନ୍ତ୍ରାର୍ଥ** :— ସେହି ପରମେଶ୍ୱର ଅଚଳ, ଏକ ଏବଂ ମନ ଠାରୁ ମଧ୍ୟ ଅଧିକତର ତୀବ୍ର ଗତିଯୁକ୍ତ ଅଟନ୍ତି । ସମସ୍ତଙ୍କର ଆଦି ଜ୍ଞାନସ୍ୱରୂପ ଅଥବା ସର୍ବଜ୍ଞ ମଧ୍ୟ ଅଟନ୍ତି । ସେହି ପରମେଶ୍ୱରଙ୍କୁ ଇନ୍ଦ୍ରାଦି ଦେବତାମାନେ ପାଇ ପାରିନାହାଁନ୍ତି କି ଜାଣିପାରି ନାହାଁନ୍ତି । ସେହି ପରବ୍ରହ୍ମ ପୁରୁଷୋତ୍ତମ ଅନ୍ୟ ଧାବମାନ ଦେବଗଣଙ୍କ ଠାରୁ ନିଜକୁ ଦୂରରେ ରଖି ସ୍ଥିରହୋଇ ରହିଛନ୍ତି । ତାଙ୍କୁ ଏମାନେ (ଇନ୍ଦ୍ରାଦି ଦେବଗଣ) କେହି ଅତିକ୍ରମ କରିପାରନ୍ତି ନାହିଁ । ତାଙ୍କର ସତ୍ତା ଓ ଶକ୍ତି ପ୍ରଭାବରୁ ଏମାନେ ନିଜ ନିଜର କର୍ମ ସମ୍ପାଦନ କରିବାକୁ ସକ୍ଷମ ହୋଇଥାନ୍ତି ।।୪।।

**ସାମାନ୍ୟ ବ୍ୟାଖ୍ୟା** :— ସେହି ସର୍ବାନ୍ତର୍ଯ୍ୟାମୀ, ସର୍ବଶକ୍ତିମାନ ପରମେଶ୍ୱର ଅଚଳ ଓ ଏକ ଅଟନ୍ତି । ଆଉ ମନଠାରୁ ମଧ୍ୟ ଅଧିକତର ତୀବ୍ର ବେଗଯୁକ୍ତ ଅଟନ୍ତି । ଯେଉଁ ପର୍ଯ୍ୟନ୍ତ ମନର ଗତି ରହିଛି ତାହା ଠାରୁ ଅନେକ ଆଗରେ ବା ଦୂରରେ ସେ ବିଦ୍ୟମାନ ହୁଅନ୍ତି । ମନ ସେଠାରେ ପହଞ୍ଚି ପାରେ ନାହିଁ । ସେ ସମସ୍ତଙ୍କର ଆଦି ଏବଂ ଜ୍ଞାନସ୍ୱରୂପ ଅଟନ୍ତି ଅଥବା ସମସ୍ତଙ୍କର ଆଦି ହୋଇଥିବା କାରଣରୁ ସମସ୍ତଙ୍କୁ ପ୍ରଥମରୁ ଜାଣନ୍ତି । ହେଲେ ତାଙ୍କୁ ଦେବତା ତଥା ମହର୍ଷିଗଣ

ପୂର୍ଣ୍ଣରୂପରେ ଜାଣି ନଥାନ୍ତି ।[୯] ଯେତେସବୁ ତୀବ୍ର ବେଗଯୁକ୍ତ ବୁଦ୍ଧି, ମନ ଓ ଇନ୍ଦ୍ରିୟଗଣ ଅଥବା ବାୟୁ ଆଦି ଦେବତାମାନେ ରହିଛନ୍ତି, ନିଜର ସମସ୍ତ ଶକ୍ତି ପ୍ରୟୋଗକରି ତାଙ୍କର ଅନୁସନ୍ଧାନ କରିବାରେ ଲାଗିଛନ୍ତି । ହେଲେ ପରମେଶ୍ୱର ନିଜେ ଅଚଳ ରହିଥିବା ହେତୁ ସେ ସମସ୍ତଙ୍କୁ ପାରକରି ଆଗକୁ ଚାଲିଯାଆନ୍ତି । ଅନ୍ୟମାନେ ସେଠାରେ ପହଞ୍ଚିପାରନ୍ତି ନାହିଁ । ଯେଉଁଭଳି ଅସୀମ ବସ୍ତୁର ସୀମା ନିର୍ଣ୍ଣୟ କରିବା ସସୀମ ବ୍ୟକ୍ତିଠାରେ ଅସମ୍ଭବ, ସେହିଭଳି ବାୟୁ ଆଦି ଦେବଗଣ ଓ ଅନ୍ୟ ଋଷିମୁନିଗଣ ତାଙ୍କୁ କଳନା କରିବା ମଧ୍ୟ ଅସମ୍ଭବ । ଯଦିଓ ସେମାନଙ୍କ ଦ୍ୱାରା ସ୍ୱ-ଶକ୍ତିର ପ୍ରୟୋଗକରି ଜଳ-ବର୍ଷଣ, ପ୍ରକାଶ-ଉଦ୍ଗୀରଣ ଓ ଜୀବନଧାରଣ ଆଦି କ୍ରିୟା ସମ୍ଭବପର ହୋଇପାରୁଛି ତଥାପି ସେ ସେହି ଅଚିନ୍ତ୍ୟଶକ୍ତି ପରମେଶ୍ୱରଙ୍କର ଶକ୍ତିକୁ କେବେହେଲେ କଳନା କରିପାରୁ ନାହାଁନ୍ତି । ମୋଟ ଉପରେ କହିଲେ ସେ ଉକ୍ତ ଶକ୍ତିର କିଞ୍ଚିତାଂଶ ମାତ୍ର ହୋଇଥିବାରୁ ତାଙ୍କ ସହଯୋଗ ବ୍ୟତିରେକ ଏମାନଙ୍କର ନିଜସ୍ୱ ଶକ୍ତି ଓ ସତ୍ତା ନାହିଁ କହିବା ଠିକ୍ ହେବ ।।୪।।

**ତଦେଜତି ତନ୍ନୈଜତି**
**ତଦ୍ ଦୂରେ ତଦ୍ୱନ୍ତିକେ ।**
**ତଦନ୍ତରସ୍ୟ ସର୍ବସ୍ୟ**
**ତଦୁ ସର୍ବସ୍ୟାସ୍ୟ ବାହ୍ୟତଃ ।।୫।।**

**ଅନ୍ୱୟ :—** ତଦ୍= ସେ, ଏଜତି = ଚଳନକ୍ଷମ ଅଟନ୍ତି, ତଦ୍ = ସେ, ଦୂରେ = ଦୂରରୁ ମଧ୍ୟ ଦୂରରେ, ତଦ୍ = ସେ, ଉ ଅନ୍ତିକେ =

ଅତ୍ୟନ୍ତ ସମୀପରେ, ତତ୍ = ସେ, ଅସ୍ୟ = ଏହି, ସର୍ବସ୍ୟ = ସମସ୍ତ ଜଗତର, ଅନ୍ତଃ = ଭିତରେ ପରିପୂର୍ଣ୍ଣ ଅଟନ୍ତି (ଆଉ) ତତ୍ = ସେ, ଅସ୍ୟ = ଏହି, ସର୍ବସ୍ୟ = ସମସ୍ତ ଜଗତର, ଉ ବାହ୍ୟତଃ = ବାହାରେ ମଧ୍ୟ ଅଟନ୍ତି ।

**ମନ୍ତ୍ରାର୍ଥ**—ସେ ଚଳନକ୍ଷମ ଅଟନ୍ତି, ସେ ଚଳନକ୍ଷମ ମଧ୍ୟ ନୁହଁନ୍ତି । ସେ ଦୂରରୁ ମଧ୍ୟ ଦୂରରେ, ପୁଣି ଅତି ନିକଟରେ ମଧ୍ୟ । ସେ ଏହି ସମସ୍ତ ଜଗତ ମଧ୍ୟରେ ପରିପୂର୍ଣ୍ଣ ହୋଇ ରହିଛନ୍ତି ଏବଂ ଏହି ସମଗ୍ର ଜଗତର ବହିର୍ଭାଗରେ ମଧ୍ୟ ରହିଛନ୍ତି ।।୫।।

**ସାମାନ୍ୟ ବ୍ୟାଖ୍ୟା**— ସେହି ପରମେଶ୍ୱର ଚଳମାନ ଓ ଅଚଳ ମଧ୍ୟ । ଏକା ସମୟରେ ପରସ୍ପର ବିରୋଧୀ ଭାବ, ଗୁଣ ତଥା କ୍ରିୟା ଯାହାଙ୍କଠାରେ ଦେଖାଯାଏ, ସେ ପରମେଶ୍ୱର ହୋଇପାରନ୍ତି । ଏହା ତାଙ୍କ ଅଚିନ୍ତ୍ୟ ଶକ୍ତିର ମହିମା ଅଟେ । ଭିନ୍ନ ଭାବରେ ମଧ୍ୟ କୁହାଯାଇପାରେ, ସେହି ପରମାତ୍ମା ନିଜ ପରମଧାମରେ ଏବଂ ଲୀଳାଧାମରେ ପ୍ରିୟ ଭକ୍ତମାନଙ୍କୁ ସୁଖ ଦେବାପାଇଁ ଅପ୍ରାକୃତ ସଗୁଣ, ସାକାର ରୂପରେ ପ୍ରକଟିତ ହୋଇ ଲୀଳା କରିଥାନ୍ତି, ଯାହାକୁ ଆମେ ତାଙ୍କର ଚଳନଶକ୍ତି କହୁ । ଆଉ ନିର୍ଗୁଣ ରୂପରେ ସର୍ବଥା ଅଚଳ ଅଟନ୍ତି । ଏହି ଭଳି ସେ ଶ୍ରଦ୍ଧା-ପ୍ରେମରହିତ ମନୁଷ୍ୟମାନଙ୍କୁ କେବେ ଦେଖାଦିଅନ୍ତି ନାହିଁ, ତେଣୁ ସେ ଦୂରରେ । ବିପରୀତଧର୍ମୀ ଲୋକମାନଙ୍କୁ ଅର୍ଥାତ୍ ପ୍ରେମୀଜନଙ୍କୁ କ୍ଷଣକ ମଧ୍ୟରେ ନିଜର ସ୍ଥିତି ପ୍ରାକଟ୍ୟ କରାନ୍ତି, ତେଣୁ ସେ ଅତି ପାଖରେ । ଏତଦତିରିକ୍ତ ସେ ସବୁବେଳେ ସର୍ବତ୍ର

ପରିପୂର୍ଣ୍ଣ ହୋଇ ରହିଛନ୍ତି କାରଣ ଏଭଳି କୌଣସି ସ୍ଥାନ ନାହିଁ, ଯାହା ତାଙ୍କ ପ୍ରଭାବରୁ ବା ଦୃଷ୍ଟିରୁ ଅଲଗା ହୋଇଥିବ । ସମସ୍ତଙ୍କ ଅନ୍ତରରେ ରହିଥିବା କାରଣରୁ ସେ ମଧ୍ୟ ସମସ୍ତଙ୍କ ଭିତରେ । ହେଲେ ଏହିଭଳି ଅବସ୍ଥାକୁ ଅଜ୍ଞାନୀ ଲୋକ ସେହି ରୂପରେ ଜାଣିପାରେ ନାହିଁ । ତେଣୁ ସେ ସେମାନଙ୍କଠାରୁ ଅନେକ ଦୂରରେ । ବସ୍ତୁତଃ ସେ ଜଗତର ଆଧାର ଏବଂ ପରମ କାରଣ ହୋଇଥିବାରୁ ଜଗତ୍ ଭିତରେ ଓ ବାହାରେ ପରିପୂର୍ଣ୍ଣ ହୋଇ ରହିଛନ୍ତି ।[୧୦]

**ଯସ୍ତୁ ସର୍ବାଣି ଭୂତାନ୍ୟାତ୍ମନ୍ୟେବାନୁପଶ୍ୟତି ।**
**ସର୍ବଭୂତେଷୁ ଚାତ୍ମାନଂ**
**ତତୋ ନ ବିଜୁଗୁପ୍ସତେ ।।୬।।**

**ଅନ୍ୱୟ :**— ତୁ= କିନ୍ତୁ, ଯଃ = ଯେଉଁ ମନୁଷ୍ୟ, ସର୍ବାଣି = ସମ୍ପୂର୍ଣ୍ଣ, ଭୂତାନି = ପ୍ରାଣିଙ୍କୁ, ଆତ୍ମନି = ପରମାତ୍ମାଙ୍କଠାରେ, ଏବ = ମଧ୍ୟ, ଅନୁପଶ୍ୟତି = ନିରନ୍ତର ଦେଖିଥାନ୍ତି, ଚ = ଏବଂ, ସର୍ବଭୂତେଷୁ = ସମ୍ପୂର୍ଣ୍ଣ ପ୍ରାଣୀଗଣଙ୍କ ମଧ୍ୟରେ, ଆତ୍ମାନମ୍ = ପରମାତ୍ମଙ୍କୁ (ଦେଖନ୍ତି), ତତଃ = ତଥା (ସେ କେବିବି), ନ ବିଜୁଗୁପ୍ସତେ = କାହାକୁ ଘୃଣା କରନ୍ତି ନାହିଁ ।

**ମନ୍ତ୍ରାର୍ଥ** :—ପରନ୍ତୁ ଯେଉଁ ମନୁଷ୍ୟ ସମ୍ପୂର୍ଣ୍ଣ ପ୍ରାଣୀମାନଙ୍କୁ ପରମାତ୍ମାଙ୍କଠାରେ ନିତ୍ୟ-ନିରନ୍ତର ଦେଖିଥାଏ, ଆଉ ସମସ୍ତ ପ୍ରାଣୀମାନଙ୍କଠାରେ ପରମାତ୍ମାଙ୍କୁ ଦେଖିଥାଏ, ସେ କେବେହେଲେ କାହାକୁ ଘୃଣା କରି ନ ଥାଏ ।।୬।।

**ସାମାନ୍ୟ ବ୍ୟାଖ୍ୟା**:— ଏହିଭଳି ଯେଉଁ ବ୍ୟକ୍ତି ପ୍ରତ୍ୟେକ ପ୍ରାଣୀଙ୍କୁ ସର୍ବାଧାର ପରବ୍ରହ୍ମ ପୁରୁଷୋତ୍ତମ ପରମାତ୍ମାଙ୍କଠାରେ ଦେଖିଥାଏ ଏବଂ ସର୍ବାନ୍ତର୍ଯ୍ୟାମୀ ପରମପ୍ରଭୁ ପରମାତ୍ମାଙ୍କୁ ପ୍ରାଣୀମାନଙ୍କଠାରେ ଦେଖିଥାଏ, ସେ କିଭଳି କାହାକୁ ଘୃଣା ଅଥବା ଦ୍ୱେଷଦୃଷ୍ଟିରେ ଦେଖିପାରେ ! ସେ ସଦାସର୍ବଦା ନିଜର ପରମପ୍ରଭୁଙ୍କୁ ଦର୍ଶନ କରୁଥାଏ । ମନକୁ ମନ ସମସ୍ତଙ୍କୁ ପ୍ରଣାମ କରିଥାଏ ଏବଂ ସମସ୍ତଙ୍କୁ ସବୁପ୍ରକାରରେ ସେବା କରିଥାଏ, ଯେଭଳି ତାଙ୍କୁ ଅର୍ଥାତ୍ ପରମାତ୍ମାଙ୍କୁ ସୁଖ ପହଞ୍ଚିପାରିବ । ଅର୍ଥାତ୍ ସେ ପ୍ରିୟତମ ବା ପରମାତ୍ମାଙ୍କୁ ସୁଖ ପହଞ୍ଚାଇବା ପାଇଁ ଯେତେସବୁ କ୍ରିୟା କରିଥାଏ । ମନରେ ସେଇ ଗୋଟିଏ କଥା, କିଭଳି ତାଙ୍କ ପ୍ରତି ଅନୁରାଗ ଓ ଅନୁରକ୍ତି ବଢିବ ତଥା ଅନୁରାଗ ସିଦ୍ଧହେବ ।[୧୧]

**ଯସ୍ମିନ୍ ସର୍ବାଣି ଭୂତାନ୍ୟାତ୍ମୈବାଭୂତ୍ ବିଜାନତଃ ।**
**ତତ୍ର କୋ ମୋହଃ କଃ ଶୋକ**
**ଏକତ୍ୱମନୁପଶ୍ୟତଃ ।।୭।।**

**ଅନ୍ୱୟ** :— ଯସ୍ମିନ୍ = ଯେଉଁ ସ୍ଥିତିରେ, ବିଜାନତଃ = ପରବ୍ରହ୍ମ ପରମେଶ୍ୱରଙ୍କୁ ଭଲଭାବରେ ଜାଣିଥିବା ମହାପୁରୁଷ(ଅନୁଭବରେ), ସର୍ବାଣି = ସମ୍ପୂର୍ଣ୍ଣ, ଭୂତାନି = ପ୍ରାଣୀ, ଆତ୍ମା = ଏକମାତ୍ର ପରମାତ୍ମସ୍ୱରୂପ, ଏବ = ମଧ୍ୟ, ଅଭୂତ୍ = ହୋଇଥାଏ, ତତ୍ର = ସେହି ଅବସ୍ଥାରେ(ସେହି), ଏକତ୍ୱମ୍ = ଏକତାର- ଏକମାତ୍ର ପରମେଶ୍ୱରଙ୍କର, ଅନୁପଶ୍ୟତଃ = ନିରନ୍ତର ସାକ୍ଷାତ୍କାରୀ ପୁରୁଷଙ୍କ ପାଇଁ, କଃ = କେଉଁ, ମୋହଃ = ମୋହ(ରହିଥାଏ ଏବଂ), କଃ = କେଉଁ, ଶୋକଃ = ଶୋକ (ସ

ଶୋକ-ମୋହରୁ ସର୍ବଥା ରହିତ, ଆନନ୍ଦପରିପୂର୍ଣ୍ଣ ହୋଇଯାଏ)

**ମନ୍ତ୍ରାର୍ଥ** :— ଯେଉଁ ସ୍ଥିତିରେ ପରବ୍ରହ୍ମ ପରମେଶ୍ୱରଙ୍କୁ ଭଲଭାବରେ ଜାଣି ପାରିଥିବା ମହାପୁରୁଷ (ଅନୁଭବରେ) ସମ୍ପୂର୍ଣ୍ଣ ପ୍ରାଣୀ ଏକମାତ୍ର ପରମାତ୍ମାଙ୍କର ସ୍ୱରୂପ ବୋଲି ଜାଣିପାରନ୍ତି । ସେହି ଅବସ୍ଥାରେ ସେହି ଏକତାର ଏକମାତ୍ର ପରମେଶ୍ୱରଙ୍କୁ (ଏକୀଭୂତ ପରମାତ୍ମାଙ୍କୁ) ନିରନ୍ତର ସାକ୍ଷାତ କରୁଥିବା ବ୍ୟକ୍ତି ଆଉ କି ମୋହ ଅବା କି ଶୋକର ବଶବର୍ତ୍ତୀ ହୁଅନ୍ତି ! ।।୭।।

**ସାମାନ୍ୟ ବ୍ୟାଖ୍ୟା** :— ଏହିଭଳି ଯେତେବେଳେ ମନୁଷ୍ୟ ପରମାତ୍ମାଙ୍କୁ ଭଲ ଭାବରେ ଚିହ୍ନି ନେଇଥାଏ, ଯେତେବେଳେ ତା'ର ସର୍ବତ୍ର ଭଗବତ୍ ଦୃଷ୍ଟି ହୋଇଯାଏ, ଯେତେବେଳେ ସେ ପ୍ରାଣୀମାନଙ୍କ ମଧ୍ୟରେ ଏକମାତ୍ର ତତ୍ତ୍ୱ ଶ୍ରୀପରମାତ୍ମାଙ୍କୁ ହିଁ ଦେଖେ, ସେତେବେଳେ ତାକୁ ସଦାସର୍ବଦା ପରମାତ୍ମାଙ୍କର ଦର୍ଶନ ହୋଇଥାଏ । ସେହି ସମୟରେ ତା'ର ଅନ୍ତଃକରଣରେ ଶୋକ-ମୋହ ଆଦି ବିକାର ଆଉ କିଭଳି ରହିପାରେ ? ସେ ତ ଏଭଳି ଆନନ୍ଦମଗ୍ନ ହୋଇଯାଏ ଯେ, ବିକାରର ଛାୟା ସୁଦ୍ଧା ତା'ର ଚିତ୍ତ ପ୍ରଦେଶରେ ପହଞ୍ଚି ପାରେନାହିଁ । ଅନ୍ୟମାନଙ୍କ ଦୃଷ୍ଟିରେ ସେ ସବୁକିଛି କରୁଥିଲେ ମଧ୍ୟ ବାସ୍ତବରେ ସେ ପ୍ରଭୁଙ୍କର କ୍ରୀଡାରେ ହିଁ ରତ ରହିଛି ।

**ସ ପର୍ଯଗାଚ୍ଛୁକ୍ରମକାୟମବ୍ରଣ**

**ମସ୍ନାବିରଂ ଶୁଦ୍ଧମପାପବିଦ୍ଧମ୍ ।**

**କବିର୍ମନୀଷୀ ପରୀଭୂଃ ସ୍ୱୟମ୍ଭୂର୍ଯାଥାତଥ୍ୟତୋ–**
**ଽର୍ଥାନ୍ ବ୍ୟଦଧାଚ୍ଛାଶ୍ୱତୀଭ୍ୟଃ ସମାଭ୍ୟଃ ।।୮।।**

**ଅନ୍ବୟ :**— ସଃ = ସେହି ମହାପୁରୁଷ, ଶୁକ୍ରମ୍ = (ସେହି) ପରମ ତେଜୋମୟ, ଅକାୟମ୍ = ସୂକ୍ଷ୍ମଶରୀରରହିତ, ଅବ୍ରଣମ୍ = ଛିଦ୍ରରହିତ ଅବା କ୍ଷତରହିତ, ଅସ୍ନାବିରମ୍ = ଶିରାରହିତ–ସ୍ଥୂଳ ପଞ୍ଚଭୌତିକ ଶରୀରରହିତ, ଶୁଦ୍ଧମ୍ = ଅପ୍ରାକୃତ ଦିବ୍ୟ ସଚ୍ଚିଦାନନ୍ଦସ୍ୱରୂପ, ଅପାପବିଦ୍ଧମ୍ = ଶୁଭାଶୁଭକର୍ମ–ସମ୍ପର୍କଶୂନ୍ୟ ପରମେଶ୍ୱରଙ୍କୁ, ପର୍ଯଗାତ୍ = ପ୍ରାପ୍ତ ହୋଇଥାଆନ୍ତି, (ଯେଉଁ) କବିଃ = ସର୍ବଦ୍ରଷ୍ଟା, ମନୀଷୀ = ସର୍ବଜ୍ଞ ଏବଂ ଜ୍ଞାନସ୍ୱରୂପ, ପରିଭୂଃ = ସର୍ବୋପରି ବିଦ୍ୟମାନ ଏବଂ ସର୍ବନିୟନ୍ତା, ସ୍ୱୟମ୍ଭୂଃ = ସ୍ୱେଚ୍ଛାରେ ପ୍ରକଟକାରୀ(ଏବଂ), ଶାଶ୍ୱତୀଭ୍ୟଃ = ଅନାଦି, ସମାଭ୍ୟଃ = କାଳରୁ, ଯାଥାତଥ୍ୟତଃ =ସମସ୍ତ ପ୍ରାଣୀମାନଙ୍କର କର୍ମାନୁସାରେ ଯଥାଯୋଗ୍ୟ, ଅର୍ଥାନ୍ = ସମ୍ପୂର୍ଣ୍ଣ ପଦାର୍ଥସମୂହର, ବ୍ୟଦଧାତ୍ = ରଚନା କରିଆସିଛନ୍ତି ।

**ମନ୍ତ୍ରାର୍ଥ** :—ସେହି ମହାପୁରୁଷ ଉକ୍ତ ପରମ ତେଜୋମୟ ସୂକ୍ଷ୍ମ ଶରୀର ରହିତ, ଛିଦ୍ର ରହିତ ଅବା କ୍ଷତ ରହିତ, ଶିରା ବା ସ୍ନାୟୁରହିତ, ସ୍ଥୂଳ ପଞ୍ଚଭୌତିକ ଶରୀର ରହିତ ଅପ୍ରାକୃତ ଦିବ୍ୟ ସଚ୍ଚିଦାନନ୍ଦ ସ୍ୱରୂପ ଶୁଭାଶୁଭ କର୍ମସମ୍ପର୍କ ଶୂନ୍ୟ ପରମେଶ୍ୱରଙ୍କୁ ପ୍ରାପ୍ତ ହୁଅନ୍ତି । ଯିଏ ସର୍ବଦ୍ରଷ୍ଟା, ସର୍ବଜ୍ଞ ଏବଂ ଜ୍ଞାନସ୍ୱରୂପ, ସର୍ବୋପରି ବିଦ୍ୟମାନ ଏବଂ ସର୍ବନିୟନ୍ତା, ସ୍ୱେଚ୍ଛାରେ ପ୍ରକଟିତ, ଅନାଦି କାଳରୁ ସମସ୍ତ ପ୍ରାଣୀମାନଙ୍କ କର୍ମାନୁସାରେ ଯଥାଯୋଗ୍ୟ ପଦାର୍ଥର ରଚ଼ନା କରିଛନ୍ତି, (ତାଙ୍କୁ ହିଁ

ପ୍ରାପ୍ତ ହୋଇଥାନ୍ତି) ।

**ସାମାନ୍ୟ ବ୍ୟାଖ୍ୟା** :— ଉପରୋକ୍ତ ବର୍ଣ୍ଣନାନୁସାରେ ପରମେଶ୍ୱରଙ୍କୁ ସର୍ବତ୍ର ଜାଣିବା ଓ ଦେଖିବାଭଳି ମହାପୁରୁଷ କେବଳ ସେହି ପରବ୍ରହ୍ମ ପୁରୁଷୋତ୍ତମ ସର୍ବେଶ୍ୱରଙ୍କୁ ପ୍ରାପ୍ତ ହୋଇଥାନ୍ତି, ଯିଏ କି ଶୁଭାଶୁଭ କର୍ମଜନିତ ପ୍ରାକୃତ ସୂକ୍ଷ୍ମ ଦେହ ତଥା ପଞ୍ଚଭୌତିକ ଅସ୍ଥି-ମଜ୍ଜାମୟ ଷଡବିକାରଯୁକ୍ତ ସ୍ଥୂଳଦେହ ରହିତ, ଛିଦ୍ର ରହିତ, ଦିବ୍ୟ ଶୁଦ୍ଧ ସଚ୍ଚିଦାନନ୍ଦଘନ ଅଟନ୍ତି । ପୁନଶ୍ଚ କୁହାଯାଇପାରେ ଯିଏ କ୍ରାନ୍ତଦର୍ଶୀ — ସର୍ବଦ୍ରଷ୍ଟା, ସର୍ବଜ୍ଞାତା ସମସ୍ତଙ୍କୁ ନିଜ ନିୟନ୍ତ୍ରଣରେ ରଖିପାରିଲାଭଳି ସର୍ବାଧିପତି ଅଟନ୍ତି ତାଙ୍କୁ ପ୍ରାପ୍ତ ହୋଇଥାନ୍ତି । ସେ କର୍ମପରବଶ ହୋଇ ନୁହେଁ ବରଂ ସ୍ୱେଚ୍ଛାରେ ପ୍ରକଟିତ ହୋଇଥାନ୍ତି, ଯିଏ କି ସନାତନକାଳରୁ ସମସ୍ତ ପ୍ରାଣୀମାନଙ୍କ ପାଇଁ ସେମାନଙ୍କର କର୍ମାନୁସାରେ ସମସ୍ତ ପଦାର୍ଥମାନଙ୍କର ଯଥାଯୋଗ୍ୟ ରଚ଼ନା ଏବଂ ବିଭାଗ ବ୍ୟବସ୍ଥା କରିଆସିଛନ୍ତି, ତାଙ୍କୁଇ ପ୍ରାପ୍ତ ହୋଇଥାନ୍ତି ।

**ଅନ୍ଧଂ ତମଃ ପ୍ରବିଶନ୍ତି**
**ଯେଽବିଦ୍ୟାମୁପାସତେ ।**
**ତତୋ ଭୂୟ ଇବ ତେ ତମୋ**
**ଯ ଉ ବିଦ୍ୟାୟାଂରତାଃ ।।୯।।**

**ଅନ୍ୱୟ** :— ଯେ = ଯେଉଁ ମନୁଷ୍ୟ, ଅବିଦ୍ୟାମ୍ = ଅବିଦ୍ୟାର, ଉପାସତେ = ଉପାସନା କରନ୍ତି, (ସେ), ଅନ୍ଧମ୍ = ଅଜ୍ଞାନସ୍ୱରୂପ, ତମଃ

= ଘୋର ଅନ୍ଧକାରରେ, ପ୍ରବିଶନ୍ତି = ପ୍ରବେଶ କରନ୍ତି(ଏବଂ), ଯେ = ଯେଉଁ ମନୁଷ୍ୟ, ବିଦ୍ୟାୟାମ୍ = ବିଦ୍ୟାରେ, ରତାଃ = ରତ ଅଟନ୍ତି ଅର୍ଥାତ୍ ଜ୍ଞାନର ମିଥ୍ୟାଭିମାନରେ ମତ୍ତ ଅଟନ୍ତି, ତେ = ସେ, ତତଃ = ତା'ଠାରୁ ଉ = ମଧ୍ୟ, ଭୂୟଃ ଇବ = ଅଧିକତର, ତମଃ = ଅନ୍ଧକାରରେ(ପ୍ରବେଶ କରନ୍ତି) ।

**ମନ୍ତ୍ରାର୍ଥ** :– ଯେଉଁ ମନୁଷ୍ୟ ଅବିଦ୍ୟାର ଉପାସନା କରେ , ସେ ଅଜ୍ଞାନସ୍ୱରୂପ ଘୋର ଅନ୍ଧକାର ମଧ୍ୟକୁ ପ୍ରବେଶ କରିଥାଏ, ଯେଉଁ ମନୁଷ୍ୟ ବିଦ୍ୟାରେ ରତ ରହେ, ଅର୍ଥାତ୍ ଜ୍ଞାନର ମିଥ୍ୟାଭିମାନରେ ମତ୍ତ ହୁଏ, ସେ ମଧ୍ୟ ଉପରୋକ୍ତ ବ୍ୟକ୍ତିଙ୍କଠାରୁ ଅଧିକତର ଅନ୍ଧକାର ମଧ୍ୟକୁ ପ୍ରବେଶ କରେ ।

**ସାମାନ୍ୟ ବ୍ୟାଖ୍ୟା** :– ଯେଉଁ ମନୁଷ୍ୟ ଭୋଗରେ ଆସକ୍ତ ହୋଇ ତାଙ୍କୁ ପ୍ରାପ୍ତ କରିବାପାଇଁ ସାଧନରୂପ ଅବିଦ୍ୟାର ବିଭିନ୍ନ ପ୍ରକାରରେ କର୍ମାନୁଷ୍ଠାନ କରେ, ତାହାର ଫଳସ୍ୱରୂପ ସେ ଅଜ୍ଞାନାନ୍ଧକାର ପରିପୂର୍ଣ୍ଣ ବିବିଧ ଯୋନି ଏବଂ ଭୋଗକୁ ପ୍ରାପ୍ତ ହୋଇଥାଏ । ସେ ମନୁଷ୍ୟଜନ୍ମର ଚ଼ରମ ଏବଂ ପରମ ଲକ୍ଷ୍ୟ ପରମେଶ୍ୱରଙ୍କୁ ପ୍ରାପ୍ତ ନହୋଇ ନିରନ୍ତର ଜନ୍ମ-ମୃତ୍ୟୁରୂପ ସଂସାର ପ୍ରବାହରେ ପଡି ବିଭିନ୍ନ ଯନ୍ତ୍ରଣା ତଥା ତାପରେ ସନ୍ତପ୍ତ ହୋଇଥାଏ ।

ଅନ୍ୟ ଯେଉଁ ମନୁଷ୍ୟମାନେ ନାଁ ତ ଅନ୍ତଃକରଣ ଶୁଦ୍ଧି ପାଇଁ କର୍ତ୍ତାପଣର ଅଭିମାନରହିତ କର୍ମକୁ ଅନୁଷ୍ଠାନ କରିଥାନ୍ତି, ନାଁ ବିବେକ-ବୈରାଗ୍ୟାଦି ଜ୍ଞାନର ପ୍ରାଥମିକ ସାଧନକୁ ସେବନ କରିଥାନ୍ତି ବରଂ

ଶାସ୍ତ୍ରକୁ ପଢି, ଶୁଣି ନିଜ ଠାରେ ବିଦ୍ୟାର ଅହଂ ଅର୍ଥାତ୍ ଜ୍ଞାନାଭିମାନୀ ହୋଇ ବସନ୍ତି । ସେହିଭଳି ମିଥ୍ୟାଜ୍ଞାନୀ ମନୁଷ୍ୟ ନିଜକୁ ଜ୍ଞାନୀ ମନେକରି ''ମୋ' ପାଇଁ କୌଣସି କର୍ତ୍ତବ୍ୟ ନାହିଁ'' ଏହିଭଳି କହି କର୍ତ୍ତବ୍ୟକର୍ମକୁ ତ୍ୟାଗ କରିଦେଇଥାନ୍ତି ଏବଂ ଇନ୍ଦ୍ରିୟମାନଙ୍କର ବଶତା ସ୍ୱୀକାରକରି ଶାସ୍ତ୍ରବିଧିର ବିପରୀତ ମନୋମୁଖୀ ଆଚରଣରେ ଲିପ୍ତ ରହନ୍ତି । ସେହି ଲୋକମାନେ ସକାମ ଭାବରେ କର୍ମ କରୁଥିବା ବିଷୟାସକ୍ତ ମନୁଷ୍ୟଙ୍କ ଅପେକ୍ଷା ମଧ୍ୟ ଅଧିକତର ଅନ୍ଧକାରରେ ପତିତ ହୁଅନ୍ତି ଅର୍ଥାତ୍ ପଶୁ-ପକ୍ଷୀ ଶୂକର-କୁକୁର ଆଦି ନୀଚ ଯୋନିରେ ତଥା କୁମ୍ଭିପାକ, ରୌରବାଦି ନର୍କରେ ପତିତ ହୁଅନ୍ତି ବା ଭୋଗକରିଥାନ୍ତି ।

**ଅନ୍ୟଦେବାହୁର୍ବିଦ୍ୟୟାନ୍ୟଦାହୁରବିଦ୍ୟୟା ।**
**ଇତି ଶୁଶ୍ରୁମ ଧୀରାଣାଂ**
**ଯେ ନସ୍ତଦ୍ ବିଚ୍‌ଚ୍‌କ୍ଷିରେ ।।୧୦।।**

**ଅନ୍ୱୟ :—** ବିଦ୍ୟୟା = ଜ୍ଞାନର ଯଥାର୍ଥ ଅନୁଷ୍ଠାନରେ, ଅନ୍ୟତ୍ ଏବ = ଭିନ୍ନ ଫଳ, ଆହୁଃ = ବତାଯାଇଛି, (ଏବଂ) ଅବିଦ୍ୟୟା = କର୍ମର ଯଥାର୍ଥ ଅନୁଷ୍ଠାନଦ୍ୱାରା, ଅନ୍ୟତ୍ = ଭିନ୍ନ ଫଳ(ମଧ୍ୟ), ଆହୁଃ = ବତାଯାଇଛି, ଇତି = ଏହିଭଳି, (ଆମେ) ଧୀରାଣାମ୍ = (ସେହି) ଧୀରପୁରୁଷଙ୍କଠାରୁ, ଶୁଶ୍ରୁମ = ବଚନ ଶୁଣିଅଛୁ, ଯେ = ଯିଏକି, ନଃ = ଆମକୁ, ତଦ୍ = ସେହି ବିଷୟର, ବିଚଚକ୍ଷିରେ = ବ୍ୟାଖ୍ୟାକରି ଭଲଭାବରେ ବୁଝାଇ କହିଛନ୍ତି ।

**ମନ୍ତ୍ରାର୍ଥ**:— ଜ୍ଞାନର ଯଥାର୍ଥ ଅନୁଷ୍ଠାନ ପାଇଁ ଭିନ୍ନ ପ୍ରକାରର ଫଳ କୁହାଯାଇଛି ଏବଂ କର୍ମକୁ ଯଥାର୍ଥ ଅନୁଷ୍ଠାନ କରିବାପାଇଁ ଭିନ୍ନ ପ୍ରକାରର ଫଳ ଦର୍ଶାଯାଇଛି । ଏହିଭଳି ଧୀରପୁରୁଷଙ୍କ ଠାରୁ ଏହି କଥାକୁ ଓ ଅବସ୍ଥାକୁ ଆମେ ଶୁଣିଅଛୁ, ଯିଏକି ଏହାକୁ ଭଲଭାବରେ ବ୍ୟାଖ୍ୟା କରିଛନ୍ତି ଓ ବୁଝାଇ କହିଛନ୍ତି ।।୧୦।।

**ସାମାନ୍ୟ ବ୍ୟାଖ୍ୟା**:— ସର୍ବୋତ୍ତମ ଫଳ ପ୍ରାପ୍ତ କରାଇ ପାରୁଥିବା ଜ୍ଞାନର ଯଥାର୍ଥ ସ୍ୱରୂପ ହେଉଛି —ନିତ୍ୟାନିତ୍ୟ ବସ୍ତୁର ବିବେକ, କ୍ଷଣଭଙ୍ଗୁର ବିନାଶଶୀଳ ଅନିତ୍ୟ ଇହଲୌକିକ ଓ ପାରଲୌକିକ ଭୋଗସାମଗ୍ରୀ ମାନଙ୍କରେ ଏବଂ ତଦ୍ ସାଧନରେ ପୂର୍ଣ୍ଣ ବିରକ୍ତି, ସଂଯମପୂର୍ଣ୍ଣ ପବିତ୍ରଜୀବନ ଏବଂ ଏକମାତ୍ର ସଚ୍ଚିଦାନନ୍ଦଘନ ପୂର୍ଣ୍ଣବ୍ରହ୍ମଙ୍କୁ ଚିନ୍ତା କରିବାରେ ଅଖଣ୍ଡ ସଂଲଗ୍ନତା । ଏହି ଯଥାର୍ଥ ଜ୍ଞାନର ଅନୁଷ୍ଠାନ ଦ୍ୱାରା ପରବ୍ରହ୍ମ ପୁରୁଷୋତ୍ତମ ପ୍ରାପ୍ତ ହୋଇଥାନ୍ତି । ଯଥାର୍ଥ ଜ୍ଞାନର ଏହା ହେଉଛି ସର୍ବୋତ୍ତମ ଫଳ । ଏବେ ଜ୍ଞାନାଭିମାନୀ ସ୍ୱେଚ୍ଛାଚାରୀ ମନୁଷ୍ୟର ଦୁର୍ଗତିର ଫଳ ବର୍ଣ୍ଣନା କରିବା । ସେମାନେ ସର୍ବଦା ଭିନ୍ନ ଏବଂ ବିଲକ୍ଷଣ ଶକ୍ତି ସମ୍ପନ୍ନ ହୋଇଥାନ୍ତି ।

ଏହିଭଳି ସର୍ବୋତ୍ତମ ଫଳପ୍ରାପ୍ତ କରାଉଥିବା କର୍ମର ସ୍ୱରୂପ ହେଉଛି —କର୍ମରେ କର୍ତ୍ତାପଣର ଅଭିମାନର ଅଭାବ । ରାଗ-ଦ୍ୱେଷ ଓ ଫଳକାମନା ରହିତ ତଥା ବର୍ଣ୍ଣାଶ୍ରମ ତଥା ପରିସ୍ଥିତି ଅନୁରୂପ କର୍ମ ପାଳନ ଓ ସେଗୁଡିକର ଯଥାଯୋଗ୍ୟ ସେବନ । ଏଗୁଡିକର ଅନୁଷ୍ଠାନ କରିବା ଦ୍ୱାରା ସମସ୍ତ ଦୁର୍ଗୁଣ ଏବଂ ଦୂରାଚାର ଅଶେଷ ରୂପରେ ନାଶ

ହୋଇଯାଇଥାଏ । ବ୍ୟକ୍ତି ହର୍ଷ-ଶୋକାଦି ସମସ୍ତ ବିକାରରହିତ ହୋଇ ମୃତ୍ୟୁମୟ ସଂସାରସାଗରକୁ ଅତିକ୍ରମ କରିପାରିଥାଏ । ସକାମ ଭାବରେ କରାଯାଉଥିବା କର୍ମର ଯେଉଁ ପୁନର୍ଜନ୍ମ ଫଳ ସେହି କର୍ତ୍ତାଙ୍କୁ ହିଁ ମିଳିଥାଏ । ତାହାଠାରୁ ଏହି ଯଥାର୍ଥ କର୍ମ ସେବନର ଫଳ ସର୍ବଥା ଭିନ୍ନ ଓ ବିଲକ୍ଷଣ ଏହା ଜାଣିରଖିବା ଦରକାର ।

ଏହିଭଳି ସତ୍ୟକୁ ଆମେ ଜ୍ଞାନୀ ମହାପୁରୁଷମାନଙ୍କ ଠାରୁ ଶୁଣିଛୁ, ଯିଏକି ଆମକୁ ଏହି ବିଷୟରେ ପୃଥକ୍ ପୃଥକ୍ ରୂପରେ ବ୍ୟାଖ୍ୟାକରି ଭଲ ଭାବରେ ବୁଝାଇ ଦେଇଛନ୍ତି ।

**ବିଦ୍ୟାଂ ଚାବିଦ୍ୟାଂ ଚ**
**ଯସ୍ତଦ୍ ବେଦୋଭୟଂ ସହ ।**
**ଅବିଦ୍ୟୟା ମୃତ୍ୟୁଂ ତୀର୍ତ୍ୱା**
**ବିଦ୍ୟୟାମୃତମଶ୍ନୁତେ ।।୧୧।।**

**ଅନ୍ୱୟ** :— ଯଃ = ଯେଉଁ ମନୁଷ୍ୟ, ତଦ୍ ଉଭୟମ୍ = ସେହି ଉଭୟଙ୍କୁ, (ଅର୍ଥାତ୍), ବିଦ୍ୟାମ୍ = ଜ୍ଞାନତତ୍ତ୍ୱକୁ, ଚ = ଏବଂ, ଅବିଦ୍ୟାମ୍ = କର୍ମତତ୍ତ୍ୱକୁ, ଚ = ମଧ୍ୟ, ସହ = ଏକାସାଥୀରେ, ବେଦ = ଯଥାର୍ଥତଃ ଜାଣି ନିଅନ୍ତି, ଅବିଦ୍ୟୟା = (ସେ) କର୍ମ ଅନୁଷ୍ଠାନଦ୍ୱାରା, ମୃତ୍ୟୁମ୍ = ମୃତ୍ୟୁକୁ, ତୀର୍ତ୍ୱା = ପାରକରି, ବିଦ୍ୟୟା = ଜ୍ଞାନ ଅନୁଷ୍ଠାନ ଦ୍ୱାରା, ଅମୃତମ୍ = ଅମୃତକୁ, ଅଶ୍ନୁତେ = ଭୋଗ କରନ୍ତି ଅର୍ଥାତ୍ ଅବିନାଶୀ ଆନନ୍ଦମୟ ପରବ୍ରହ୍ମ ପୁରୁଷୋତ୍ତମଙ୍କୁ ପ୍ରତ୍ୟକ୍ଷରୂପେ ପ୍ରାପ୍ତ ହୁଅନ୍ତି ।

**ମନ୍ତ୍ରାର୍ଥ** :— ଯେଉଁ ମନୁଷ୍ୟ ପୂର୍ବବର୍ଣ୍ଣିତ ଉଭୟ ଅବସ୍ଥାକୁ ଅର୍ଥାତ୍ ଜ୍ଞାନତତ୍ତ୍ୱକୁ ଓ କର୍ମତତ୍ତ୍ୱକୁ ଏକସଙ୍ଗେ ଯଥାର୍ଥ ଭାବରେ ଜାଣିନେଇଥାଏ,ସେ କର୍ମାନୁଷ୍ଠାନକରି ମୃତ୍ୟୁକୁ ଅତିକ୍ରମ କରିଥାଏ । ଆଉ ଜ୍ଞାନର ଅନୁଷ୍ଠାନ କରିବା ଦ୍ୱାରା ଅମୃତକୁ ପ୍ରାପ୍ତ ହୋଇଥାଏ ଅର୍ଥାତ୍ ଅବିନାଶୀ ଆନନ୍ଦମୟ ପରବ୍ରହ୍ମ ପୁରୁଷୋତ୍ତମଙ୍କୁ ପ୍ରତ୍ୟକ୍ଷ ଭାବରେ ପ୍ରାପ୍ତ ହୋଇଥାଏ ।।୧୧।।

**ସାମାନ୍ୟ ବ୍ୟାଖ୍ୟା** :— କର୍ମ ଏବଂ ଅକର୍ମର ବାସ୍ତବିକ ରହସ୍ୟ ବୁଝିବାକୁ ବଡ ବଡ ବୁଦ୍ଧିମାନ ବ୍ୟକ୍ତି ମଧ୍ୟ ଭୁଲ କରି ବସନ୍ତି । ଏହି କାରଣରୁ କର୍ମରହସ୍ୟ ଅନଭିଜ୍ଞ ଜ୍ଞାନାଭିମାନୀ ମନୁଷ୍ୟ କର୍ମକୁ ବ୍ରହ୍ମଜ୍ଞାନର ବାଧକ ବୁଝିଥାଆନ୍ତି ଏବଂ ନିଜର ବର୍ଣ୍ଣାଶ୍ରମୋଚିତ ଅବଶ୍ୟ କରଣୀୟ ସମସ୍ତ କର୍ମକୁ ତ୍ୟାଗ କରିଦେଇଥାଆନ୍ତି । ହେଲେ ଏହି ପ୍ରକାର ତ୍ୟାଗର ଫଳ ଯଥାର୍ଥରେ ତାଙ୍କୁ ଲାଭ ହୁଏ । ଅର୍ଥାତ୍ କର୍ମବନ୍ଧନରୁ ମୁକ୍ତି ମିଳେ ନାହିଁ ।[୧୨] ଏହିଭଳି ଜ୍ଞାନ (ଅକର୍ମାବସ୍ଥା-ନୈଷ୍କର୍ମ୍ୟ)ର ତତ୍ତ୍ୱ ନ ବୁଝିଥିବା କାରଣରୁ ମନୁଷ୍ୟ ନିଜକୁ ଜ୍ଞାନୀ ତଥା ସଂସାରରୁ ଊର୍ଦ୍ଧ୍ୱରେ ବୋଲି ମନେ କରିଥାଏ । ଅତଃ ସେ ତା ନିଜକୁ ପାପ-ପୁଣ୍ୟରେ ଅଲିପ୍ତ ମାନି ମନଇଚ୍ଛା କର୍ମାଚରଣ କରିଯାଏ । ଅଥବା କର୍ମକୁ ଭାର ମନେକରି ତାକୁ ଛାଡି ଦେଇଥାଏ ଏବଂ ଆଳସ୍ୟ, ନିଦ୍ରା ତଥା ପ୍ରମାଦର ବଶବର୍ତ୍ତୀ ହୋଇ ଦୁର୍ଲ୍ଲଭ ମାନବ ଜୀବନର ଅମୂଲ୍ୟ ସମୟକୁ ନଷ୍ଟ କରିଦେଇଥାଏ ।

ଉପରୋକ୍ତ ଉଭୟପ୍ରକାରର ଅନର୍ଥରୁ ରକ୍ଷା ପାଇବା ପାଇଁ

ଏକମାତ୍ର ଉପାୟ କର୍ମ ଏବଂ ଜ୍ଞାନର ରହସ୍ୟକୁ ସମାନ ଭାବରେ ବୁଝି ଯଥାଯୋଗ୍ୟ କର୍ମର ଅନୁଷ୍ଠାନ କରିବା ଦରକାର । ତେଣୁ ଉକ୍ତ ଶ୍ଳୋକରେ କୁହାଯାଇଛି —ଯେଉଁ ବ୍ୟକ୍ତି ଉଭୟତତ୍ତ୍ୱକୁ ଏକା ସଙ୍ଗରେ ବୁଝିପାରେ, ସେ ବର୍ଣ୍ଣାଶ୍ରମ ଏବଂ ପରିସ୍ଥିତି ଅନୁରୂପ ଶାସ୍ତ୍ରବିହିତ କର୍ମକୁ ବୁଝି ତ୍ୟାଗଯୋଗ୍ୟ ଓ କରଣୀୟ କର୍ମକୁ ସୁଚାରୁରୂପେ ସମ୍ପାଦନ କରିଥାଏ । ତା'ଠାରେ କର୍ତ୍ତାପଣର ଅଭିମାନ, ରାଗ-ଦ୍ୱେଷ ଓ ଫଳ କାମନାର ଆଶା ଓ ଆକାଂକ୍ଷା ଦେଖାଯାଇ ନଥାଏ । ଏହାଦ୍ୱାରା ତାଙ୍କର ଜୀବନଯାତ୍ରା ସୁଖପୂର୍ଣ୍ଣ ହେବା ସଙ୍ଗେ ସଙ୍ଗେ କର୍ମାନୁଷ୍ଠାନର ଫଳ ଅନ୍ତଃକରଣସ୍ଥ ଦୁର୍ଗୁଣ ଓ ବିକାରକୁ ଦୂରେଇ ନିର୍ମଳ କରିଦେଇଥାଏ । ଭଗବଦ୍ କୃପାରୁ ସେ ମୃତ୍ୟୁମୟ ସଂସାରକୁ ସହଜରେ ପାର ହୋଇଥାଏ । ଏହା ସହିତ ବିବେକ ବୈରାଗ୍ୟ ସମ୍ପନ୍ନ ହୋଇ ନିରନ୍ତର ବ୍ରହ୍ମବିଚାରରୂପ ଜ୍ଞାନାଭ୍ୟାସ କରି ପରମେଶ୍ୱରଙ୍କର ଯଥାର୍ଥଜ୍ଞାନ ଉଦୟ ହେବା ପରେ ଖୁବ୍ ଶୀଘ୍ର ପରମେଶ୍ୱରଙ୍କର ସାକ୍ଷାତକାର ହୋଇଥାଏ । ନିଃସନ୍ଦେହରେ ସେ ସାର୍ଥକ ଜୀବନ ବିତାଇ ଅବଶେଷରେ ପୂର୍ଣ୍ଣତ୍ୱ ପ୍ରାପ୍ତ ହୋଇଥାଏ ।

**ଅନ୍ଧଂ ତମଃ ପ୍ରବିଶନ୍ତି ଯେଽସମ୍ଭୂତିମୁପାସତେ ।**
**ତତୋ ଭୂୟ ଇବ ତେ ତମୋ**
**ଯ ଉ ସମ୍ଭୂତ୍ୟାଂରତାଃ ।।୧୨।।**

**ଅନ୍ୱୟ :—** ଯେ = ଯେଉଁ ମନୁଷ୍ୟ, ଅସମ୍ଭୂତିମ୍ = ବିନାଶଶୀଳ ଦେବ-ପିତର-ମନୁଷ୍ୟ ଆଦିଙ୍କର, ଉପାସତେ = ଉପାସନା କରନ୍ତି,

(ତେ) = ସେ, ଅନ୍ଧମ୍ = ଅଜ୍ଞାନରୂପ, ତମଃ = ଅନ୍ଧକାରରେ ପ୍ରବେଶ କରନ୍ତି, (ଏବଂ), ଯେ = ଯିଏ, ସମ୍ଭୂତ୍ୟାମ୍ = ଅବିନାଶୀ ପରମେଶ୍ୱରଙ୍କ ଠାରେ, ରତାଃ = ରତ ରହନ୍ତି ଅର୍ଥାତ୍ ତାଙ୍କର ଉପାସନାର ମିଥ୍ୟାଭିମାନରେ ମତ୍ତ ରହନ୍ତି, ତେ = ସେ, ତତଃ = ତା'ଠାରୁ, ଉ = ମଧ୍ୟ ଭୂୟଃ ଇବ = ଅଧିକତର, ତମଃ = ଅନ୍ଧକାରରେ(ପ୍ରବେଶ କରନ୍ତି) ।

**ମନ୍ତ୍ରାର୍ଥ** :— ଯେଉଁ ମନୁଷ୍ୟ ବିନାଶଶୀଳ ଦେବତା-ପିତୃ-ମନୁଷ୍ୟ ଆଦିଙ୍କର ଉପାସନା କରିଥାଏ, ସେ ଅଜ୍ଞାନରୂପ ଘୋର ଅନ୍ଧକାର ମଧ୍ୟରେ ପ୍ରବେଶ କରିଥାଏ ଏବଂ ଯିଏ ଅବିନାଶୀ ପରମେଶ୍ୱରଙ୍କଠାରେ ରତ ରହିଥାଏ, ଅର୍ଥାତ୍ ତାଙ୍କରି ଉପାସନାର ମିଥ୍ୟା ଅଭିମାନ ରଖିଥାଏ, ସେ ତାହାଠାରୁ ମଧ୍ୟ ଅଧିକତର ଅନ୍ଧକାରରେ ପତିତ ହୋଇଥାଏ ।।୧୨।।

**ସାମାନ୍ୟ ବ୍ୟାଖ୍ୟା** :— ଯେଉଁ ମନୁଷ୍ୟ ବିନାଶଶୀଳ ସ୍ତ୍ରୀ, ପୁତ୍ର, ଧନ-ମାନ ଆଦି ଇହଲୌକିକ ତଥା ମୁକ୍ତି ଆଦି ପାରଲୌକିକ ଭୋଗ ସାମଗ୍ରୀରେ ଆସକ୍ତ ହୋଇ ତାହାକୁ ଜୀବନରେ ସୁଖର କାରଣ ବୋଲି ମନେକରେ ଏବଂ ଅର୍ଜନ ସେବନରେ ନିଜକୁ ସଂଲଗ୍ନ କରି ରଖେ, ସାମାନ୍ୟ ସୁଖ ପାଇଁ ଦେବତା, ପିତୃ ଓ ମାନବଙ୍କର ଉପାସନା କରେ, ଜନ୍ମ-ମରଣର ଚକ୍ର ଭିତରେ ଆବଦ୍ଧ ଥାଏ, ସେ ଶରୀରତଃ କ୍ଷୟ ହେଉଥିଲେ ମଧ୍ୟ ବାରମ୍ବାର ଉକ୍ତ କର୍ମରେ ପତିତ ହୋଇଥାଏ । ଯଦିଓ ସେ ଭୋଗାସକ୍ତି ତଥା ଉପାସନାର ଫଳ ସ୍ୱରୂପ ବିଭିନ୍ନ

ଦେବତାମାନଙ୍କର ଲୋକକୁ ବା ପୁରକୁ ଗମନକରି ବିଭିନ୍ନ ଭୋଗଯୋନି ପ୍ରାପ୍ତ ହୋଇଥାଏ, ତାହା ତାହାର ଅଜ୍ଞାନରୂପ ଅନ୍ଧକାର ମଧ୍ୟରେ ପ୍ରବେଶ ନୁହେଁ କି ?

ଅନ୍ୟ ଯେଉଁ ମନୁଷ୍ୟ ଶାସ୍ତ୍ରର ତାତ୍ପର୍ଯ୍ୟକୁ ଏବଂ ଭଗବାନଙ୍କର ଦିବ୍ୟଗୁଣ, ପ୍ରଭାବ, ତତ୍ତ୍ୱ ଏବଂ ରହସ୍ୟକୁ ନ ବୁଝିଥିବା କାରଣରୁ ତାଙ୍କର ଧ୍ୟାନ ନକରି ଶ୍ରଦ୍ଧାବିହୀନ ଭାବରେ ଭୋଗାସକ୍ତି ହୋଇ ଲୋକସେବା ଏବଂ ଶାସ୍ତ୍ରବିହିତ ଦେବ ଉପାସନାରେ ନିଜକୁ ପ୍ରବୃତ୍ତ କରିଥାଏ, ସେହିଭଳି ବିଷୟାସକ୍ତ ମନୁଷ୍ୟ ସତମିଛ ଭାବରେ ନିଜକୁ ଈଶ୍ୱର ଉପାସକ ବତାଇ ସରଳ ହୃଦୟ ଜନତାଙ୍କ ଦ୍ୱାରା ନିଜର ପୂଜା କରାଇଥାଏ । ସେହିଲୋକ ମିଥ୍ୟାଭିମାନ କାରଣରୁ ଦେବତାମାନଙ୍କୁ ମଧ୍ୟ ତୁଚ୍ଛ କହିଥାଏ, ଏପରିକି ଶାସ୍ତ୍ରାନୁସାରେ କର୍ତ୍ତବ୍ୟ-କର୍ମକୁ, ଦେବପୂଜା ଓ ଗୁରୁଜନ ସମ୍ମାନ ଓ ସତ୍କାରକୁ ତ୍ୟାଗ କରିଦେଇଥାଏ । ଖାଲି ସେତିକି ନୁହେଁ ଅନ୍ୟକୁ ନିଜର ବାକ୍ପଟୁତା ଦେଖାଇ ସେମାନଙ୍କର ନିୟମ ନିଷ୍ଠାକୁ ମଧ୍ୟ ଭଙ୍ଗ କରିଥାଏ । ସେ ନିଜକୁ ଈଶ୍ୱର ସମକକ୍ଷ ମନେକରି ମନଇଚ୍ଛା ବିଷୟ ସେବନ କରିବା ସଙ୍ଗେ ସଙ୍ଗେ ଦୂରାଚରଣରେ ପ୍ରବୃତ୍ତ ହୋଇଥାଏ । ସେହିଭଳି ବ୍ୟକ୍ତିଙ୍କର ଦୁଷ୍କର୍ମର କୁପରିଣାମ ମଧ୍ୟ ପୂର୍ବବର୍ଣ୍ଣିତ ବ୍ୟକ୍ତିଙ୍କ ଠାରୁ ଆହୁରି ହୀନତର ହୋଇଥାଏ । ହୀନ ଯୋନି ଓ ଅସହ୍ୟ ନର୍କ ଯନ୍ତ୍ରଣା ଭୋଗକରି ନିଜକୁ ଘୋରତର ଅନ୍ଧକାରରେ ପତିତ କରାଇଥାଏ ।[୧୩]

**ଅନ୍ୟଦେବାହୁଃ ସମ୍ଭବାଦନ୍ୟଦାହୁରସମ୍ଭବାତ୍ ।**

**ଇତି ଶୁଶ୍ରୁମ ଧୀରାଣାଂ**
**ଯେ ନସ୍ତଦ୍‌ବିଚ଼ଚ଼କ୍ଷିରେ ।।୧୩।।**

**ଅନ୍ୱୟ :—** ସମ୍ଭବାତ୍ = ଅବିନାଶୀ ବ୍ରହ୍ମଙ୍କର ଉପାସନାରେ, ଅନ୍ୟତ୍ = ଏବ ଭିନ୍ନ ଫଳ, ଆହୁଃ = ବତାଯାଇଛି, (ଏବଂ) ଅସମ୍ଭବାତ୍ = ବିନାଶଶୀଳ ଦେବ-ପିତର-ମନୁଷ୍ୟ ଆଦିଙ୍କର ଉପାସନାରେ, ଅନ୍ୟତ୍ = ଭିନ୍ନ ଫଳ, ଆହୁଃ = ବତାଯାଇଛି, ଇତି = ଏହିପ୍ରକାର, (ଆମେ) ଧୀରାଣାମ୍ = (ସେହି) ଧୀରପୁରୁଷଙ୍କ, ଶୁଶ୍ରୁମ = ବଚନ ଶୁଣିଅଛୁ, ଯେ = ଯେଉଁମାନେ, ନଃ = ଆମକୁ, ତତ୍ = ସେହି ବିଷୟକୁ, ବିଚଚକ୍ଷିରେ = ବ୍ୟାଖ୍ୟାକରି ଭଲଭାବରେ ବୁଝାଇଥିଲେ ।

**ମନ୍ତ୍ରାର୍ଥ**÷— ଅବିନାଶୀ ବ୍ରହ୍ମଙ୍କର- ଉପାସନା କରିବାର ଭିନ୍ନ ଫଳ ଓ ବିନାଶଶୀଳ ଦେବ-ପିତର ଏବଂ ମନୁଷ୍ୟ ଆଦିଙ୍କ ଉପାସନାର ଭିନ୍ନ ଫଳ ବତାଯାଇଛି । ଧୀରପୁରୁଷଙ୍କ ଠାରୁ ଆମେ ଏହିଭଳି ବଚ଼ନ ସବୁ ଶୁଣିଅଛୁ, ଯିଏ ଆମକୁ ସେହି ବିଷୟ ବ୍ୟାଖ୍ୟାକରି ଭଲଭାବରେ ବୁଝାଇଛନ୍ତି ।।୧୩।।

**ସାମାନ୍ୟ ବ୍ୟାଖ୍ୟା**÷— ଅବିନାଶୀ ବ୍ରହ୍ମଙ୍କର ଉପାସନାର ଯଥାର୍ଥ ସ୍ୱରୂପ ହେଉଛି - ପରବ୍ରହ୍ମ ପୁରୁଷୋତ୍ତମଙ୍କୁ ସର୍ବଶକ୍ତିମାନ, ସର୍ବଜ୍ଞ, ସର୍ବାଧାର ଇତ୍ୟାଦି ମନେକରି ଭକ୍ତି, ଶ୍ରଦ୍ଧା ତଥା ପ୍ରେମ ପରିପୂର୍ଣ୍ଣ ହୃଦୟରେ ନିତ୍ୟ-ନିରନ୍ତର ତାଙ୍କରି ଦିବ୍ୟ ପରମମଧୁର ନାମରୂପ ଲୀଳା ତଥା ଗୁଣରହିତ ଏବଂ ଦିବ୍ୟଗୁଣମୟ ସଚ୍ଚିଦାନନ୍ଦଙ୍କର ସ୍ୱରୂପକୁ ଶ୍ରବଣ, କୀର୍ତ୍ତନ, ସ୍ମରଣାଦି କରିବା । ଯଦି ନ କରିବା ତେବେ ଈଶ୍ୱର

ଉପାସନାର ମିଛ ଦେଖାଣିଆ ତଥା ବୃଥା ଦାମ୍ଭିକତାର ଫଳ ଅବଶ୍ୟ ଭୋଗିବାକୁ ହେବ । ତାଙ୍କୁ ସତ୍‌ପୁରୁଷଙ୍କୁ ମିଳୁଥିବା ଫଳ ଠାରୁ ସମ୍ପୂର୍ଣ୍ଣ ବିପରୀତ ଫଳ ଲାଭ ହୁଏ ।

ଯେଉଁଭଳି ବିନାଶଶୀଳ ଦେବତା, ପିତୃଲୋକ ଓ ମନୁଷ୍ୟ ଆଦିଙ୍କର ଉପାସନାର ଯଥାର୍ଥ ସ୍ୱରୂପ ହେଉଛି — ଶାସ୍ତ୍ର ଏବଂ ଭଗବାନଙ୍କର ଆଜ୍ଞାନୁସାରେ ଦେବତା, ପିତୃ, ବ୍ରାହ୍ମଣ, ମାତା-ପିତା, ଆଚାର୍ଯ୍ୟ ଏବଂ ଜ୍ଞାନୀମାନଙ୍କର ସେବା-ପୂଜାକୁ କର୍ତ୍ତବ୍ୟ ମନେକରି ପାଳନ କରିବା । ତାହାକୁ ପାଳନ କରି ଭଗବଦ୍ କର୍ମ ସମ୍ପାଦନ କରୁଥିବା କଥା ଉପଲବ୍ଧ କରିବା । ସେହିଭଳି ଭାବରେ ଦେବତା, ପିତୃ ତଥା ମନୁଷ୍ୟ ଆଦିଙ୍କର ସେବା-ପୂଜା କରୁଥିବା ନିଷ୍କାମୀ ବ୍ୟକ୍ତିଙ୍କର ଅନ୍ତଃକରଣ ଶୁଦ୍ଧ ହୋଇ ଭଗବଦ୍ କୃପାରୁ ପ୍ରସନ୍ନତା ପ୍ରାପ୍ତ ହୁଏ ଏବଂ ସେ ମୃତ୍ୟୁମୟ ସଂସାରକୁ ସହଜରେ ପାର ବା ଅତିକ୍ରମ କରିପାରେ । ବିନାଶଶୀଳ ଦେବତାଦିଙ୍କର ସକାମ ଉପାସନାରେ ଯେଉଁ ଫଳ ମିଳେ, ତାହାଠାରୁ ଉକ୍ତ ବ୍ୟକ୍ତିଙ୍କର ଫଳ ସର୍ବାଦୌ ଭିନ୍ନ ଅଟେ ।

ଏହିଭଳି କଥାକୁ ଆମେ ଧୀର ତତ୍ତ୍ୱଜ୍ଞାନୀ ମହାପୁରୁଷଙ୍କ ଠାରୁ ଶୁଣିଛୁ । ସେ ଆମକୁ ଠିକ୍ ଭାବରେ ବୁଝାଇ ଦେଇଛନ୍ତି ।

**ସମ୍ଭୂତିଂ ଚ଼ ବିନାଶଂ ଚ଼**
**ଯସ୍ତଦ୍ ବେଦୋଭୟଂ ସହ ।**
**ବିନାଶେନ ମୃତ୍ୟୁଂ ତୀର୍ତ୍ୱା**
**ସମ୍ଭୂତ୍ୟାମୃତମଶ୍ନୁତେ ।।୧୪।।**

**ଅନ୍ୱୟ :—** ଯଃ = ଯେଉଁ ମନୁଷ୍ୟ, ତତ୍ ଉଭୟମ୍ = ସେହି ଉଭୟଙ୍କୁ, (ଅର୍ଥାତ୍) ସମ୍ଭୂତିମ୍ = ଅବିନାଶୀ ପରମେଶ୍ୱରଙ୍କୁ, ଚ = ଏବଂ ବିନାଶମ୍ = ବିନାଶଶୀଳ ଦେବାଦିଙ୍କୁ, ଚ = ମଧ୍ୟ, ସହ = ଏକସାଥୀରେ, ବେଦ = ଯଥାର୍ଥତଃ ଜାଣିନିଅନ୍ତି, ବିନାଶେନ = (ସେହି)ବିନାଶଶୀଳ ଦେବାଦିଙ୍କର ଉପାସନା ଦ୍ୱାରା, ମୃତ୍ୟୁମ୍ = ମୃତ୍ୟୁକୁ, ତୀର୍ତ୍ୱା = ପାରକରି, ସମ୍ଭୂତ୍ୟା = ଅବିନାଶୀ ପରମେଶ୍ୱରଙ୍କ ଉପାସନାଦ୍ୱାରା, ଅମୃତମ୍ = ଅମୃତକୁ, ଅଶ୍ନୁତେ = ଭୋଗକରନ୍ତି ଅର୍ଥାତ୍ ଅବିନାଶୀ ଆନନ୍ଦମୟ ପରବ୍ରହ୍ମ ପୁରୁଷୋତ୍ତମଙ୍କୁ ପ୍ରତ୍ୟକ୍ଷ ପ୍ରାପ୍ତ ହୋଇଥାନ୍ତି ।

**ମନ୍ତ୍ରାର୍ଥ** ÷— ଯେଉଁ ମନୁଷ୍ୟ –ପୂର୍ବ ବର୍ଣ୍ଣିତ ଉଭୟ ଅବସ୍ଥାକୁ ଅର୍ଥାତ୍ ଅବିନାଶୀ ପରମେଶ୍ୱରଙ୍କୁ ଏବଂ ବିନାଶଶୀଳ ଦେବତାଦିଙ୍କୁ ମଧ୍ୟ ଯଥାର୍ଥ ଭାବରେ ଜାଣିନିଏ, ସେ ବିନାଶଶୀଳ ଦେବତାମାନଙ୍କର ଉପାସନା କରି ମୃତ୍ୟୁକୁ ଏବଂ ଅବିନାଶୀ ପରମେଶ୍ୱରଙ୍କର ଉପାସନାକରି ଅମୃତକୁ ପ୍ରାପ୍ତ ହୋଇଥାଏ ।।୧୪।।

**ସାମାନ୍ୟ ବ୍ୟାଖ୍ୟା** ÷— ଯେଉଁ ମନୁଷ୍ୟ ବୁଝି ନେଇଥାଏ କି, ପରବ୍ରହ୍ମ ପୁରୁଷୋତ୍ତମ ନିତ୍ୟ, ଅବିନାଶୀ, ସର୍ବବ୍ୟାପୀ, ସର୍ବଶକ୍ତିମାନ, ସର୍ବାଧାର, ସର୍ବାଧିପତି, ସର୍ବାତ୍ମା ଏବଂ ସର୍ବଶ୍ରେଷ୍ଠ ବୋଲି, ସେ ବୁଝିଥାଏ ସ୍ପଷ୍ଟଭାବରେ ପରମେଶ୍ୱର ନିତ୍ୟନିର୍ଗୁଣ ଏବଂ ନିତ୍ୟସଗୁଣ । ଏପରିକି ଆହୁରି ମଧ୍ୟ ସେ ବୁଝି ଯାଇଥାଏ କି ଦେବତା, ପିତର, ମନୁଷ୍ୟ ଆଦି ଯେଉଁ ସବୁ ଯୋନି ରହିଛି ଆଉ ଭୋଗ ସାମଗ୍ରୀ ରହିଛି, ସବୁକିଛି ବିନାଶଶୀଳ, କ୍ଷଣଭଙ୍ଗୁର ଏବଂ ଜନ୍ମ–ମୃତ୍ୟୁଶୀଳ ହୋଇଥିବା

କାରଣରୁ ଦୁଃଖର କାରଣ ଅଟେ । ତଥାପି ଏମାନଙ୍କ ଭିତରେ ଯେଉଁ ସତ୍ତା, ସ୍ଫୂର୍ତ୍ତି ତଥା ଶକ୍ତି ରହିଛି, ସବୁକିଛି ଭଗବାନଙ୍କର ଅଟେ ଏବଂ ଭଗବାନ ଜଗଦ୍‌ଚକ୍ରକୁ ସୁଚାରୁରୂପେ ଚଳାଇବା ପାଇଁ ଭଗବଦ୍ ପ୍ରୀତ୍ୟର୍ଥେ ସେମାନଙ୍କର ଯଥାଯୋଗ୍ୟ ସେବା-ପୂଜା ଆଦି କରିବା ପାଇଁ ଶାସ୍ତ୍ରରେ ଆଜ୍ଞା ଦେଇଛନ୍ତି । ବିଶେଷକରି ଶାସ୍ତ୍ର ହେଉଛି ଭଗବାନଙ୍କର ବାଣୀ, ସେହି ମନୁଷ୍ୟ ଇହଲୌକିକ ତଥା ପାରଲୌକିକ ଦେବ-ପିତର ଆଦି ଲୋକ ଭୋଗ କରିବାପାଇଁ ଆସକ୍ତ ନ ହୋଇ କାମନା-ମମତା ଆଦିକୁ ହୃଦୟରୁ ବହିଷ୍କାରକରି ତାହାର ଯଥାଯୋଗ୍ୟ ଶାସ୍ତ୍ରବିହିତ ସେବା-ପୂଜା କରିଥାଏ । ତାହା ଦ୍ୱାରା ତା'ର ଜୀବନଯାତ୍ରା ସୁଖପୂର୍ବକ ଚାଳିତ ହେବା ସଙ୍ଗେସଙ୍ଗେ ଆଭ୍ୟନ୍ତରିଣ ବିକାର ନାଶହୋଇ ଅନ୍ତଃକରଣ ଶୁଦ୍ଧ ହୋଇଥାଏ । ଆଉ ଭଗବଦ୍ କୃପାରୁ ସେ ସହଜରେ ମୃତ୍ୟୁମୟ ସଂସାର ସାଗରରୁ ତରି ଯାଇପାରେ ଅର୍ଥାତ୍ ଇହଲୋକରୁ ନିଷ୍କୃତି ପାଇଥାଏ । ବିନାଶଶୀଳ ଦେବତା ଆଦିଙ୍କର ନିଷ୍କାମ ଉପାସନା ସହିତ ଅବିନାଶୀ ପରାତ୍ପର ପ୍ରଭୁଙ୍କର ଉପାସନା ଯୋଗୁଁ ସେ ଅତିଶୀଘ୍ର ଅମୃତରୂପ ପରମେଶ୍ୱରଙ୍କୁ ପ୍ରତ୍ୟକ୍ଷ ହୋଇଥାଏ ଅର୍ଥାତ୍ ପ୍ରାପ୍ତହୋଇଥାଏ ।

**ହିରଣ୍ମୟେନ ପାତ୍ରେଣ**
**ସତ୍ୟସ୍ୟାପିହିତଂ ମୁଖମ୍ ।**
**ତତ୍ତ୍ୱଂ ପୁଷନ୍ନପାବୃଣୁ**
**ସତ୍ୟଧର୍ମାୟ ଦୃଷ୍ଟୟେ ।।୧୫।।**

**ଅନ୍ୱୟ :—** ପୂଷନ୍ = ହେ ସମସ୍ତଙ୍କର ଭରଣପୋଷଣକାରୀ ପରମେଶ୍ୱର, ସତ୍ୟସ୍ୟ = ସତ୍ୟସ୍ୱରୂପ ଆପଣ ସର୍ବେଶ୍ୱରଙ୍କୁ, ମୁଖମ୍ = ଶ୍ରୀମୁଖ, ହିରଣ୍ମୟେନ = ଜ୍ୟୋତିର୍ମୟ ସୂର୍ଯ୍ୟମଣ୍ଡଳରୂପ, ପାତ୍ରେଣ = ପାତ୍ରରେ, ଆପହିତମ୍ = ଆଚ୍ଛାଦିତ କରାଯାଇଛି, ସତ୍ୟଧର୍ମାୟ = ଆପଣଙ୍କର ଭକ୍ତିରୂପ ସତ୍ୟଧର୍ମାନୁଷ୍ଠାନକାରୀ ମୋତେ, ଦୃଷ୍ଟୟେ = ଆପଣଙ୍କ ଦର୍ଶନ ନିମିତ୍ତ, ତତ୍ = ସେହି ଆବରଣକୁ, ତ୍ୱମ୍ = ଆପଣ, ଅପାବୃଣୁ = ହଟାଇ ଦିଅନ୍ତୁ ।

**ମନ୍ତ୍ରାର୍ଥ :—** ହେ ସମସ୍ତଙ୍କର ପାଳନପୋଷଣକାରୀ ପରମେଶ୍ୱର ! ସତ୍ୟସ୍ୱରୂପ ଆପଣଙ୍କ ଶ୍ରୀମୁଖ ଜ୍ୟୋତିର୍ମୟ ସୂର୍ଯ୍ୟମଣ୍ଡଳ ରୂପକ ପାତ୍ରରେ ଆଚ୍ଛାଦିତ ହୋଇ ରହିଛି । ଆପଣ ଭକ୍ତିରୂପ ସତ୍ୟ ଧର୍ମର ଅନୁଷ୍ଠାନ କରୁଥିବା ବ୍ୟକ୍ତିଙ୍କୁ ଦର୍ଶନ ଦେବା ପାଇଁ ସେହି ଆବରଣକୁ ଦୂରେଇ ଦିଅନ୍ତୁ ।।୧୫।।

**ସାମାନ୍ୟ ବ୍ୟାଖ୍ୟା :—** ଭକ୍ତ ଏହିଭଳି ପ୍ରାର୍ଥନା କରିବା ଦରକାର —'ହେ ପ୍ରଭୁ ! ହେ ଭଗବାନ ! ଆପଣ ଅଖିଳ ବ୍ରହ୍ମାଣ୍ଡର ପୋଷକ, ଆପଣଙ୍କ ଦ୍ୱାରା ସବୁକିଛି ପୁଷ୍ଟିପାତ ହେଉଛି । ଆପଣଙ୍କ ଶକ୍ତି ହିଁ ସତ୍ୟଧର୍ମ ଏବଂ ମୁଁ ସେଥିରେ ଲିପ୍ତହୋଇ ରହିଛି, ଅତଏବ ମୋର ପୁଷ୍ଟିସାଧନ (ମୋ' ମନୋରଥ ପୂର୍ତ୍ତି ଆପଣ ଅବଶ୍ୟ କରିବେ) କରନ୍ତୁ । ଆପଣଙ୍କର ଦିବ୍ୟ ଶ୍ରୀମୁଖ ହେଉଛି, ସଚ୍ଚିଦାନନ୍ଦ ସ୍ୱରୂପ ପ୍ରକାଶମୟ ସୂର୍ଯ୍ୟମଣ୍ଡଳର ଦେଦୀପ୍ୟମାନ, ଜ୍ୟୋତିର୍ମୟ ଆଲୋକ ପିଣ୍ଡ, ତାହା ଯେଉଁ ଉଜ୍ଜ୍ୱଳତମ ଜ୍ୟୋତି ଦ୍ୱାରା ଆବୃତ୍ତ ହୋଇ ରହିଛି

ତାହାକୁ ଆପଣ ନିରାବରଣ କରାଇ ଦର୍ଶନରେ ବାଧକ ହେଉଥିବା ଯେତେସବୁ ଆବରଣ ରହିଛନ୍ତି ବା ପ୍ରତିବନ୍ଧକ ରହିଛନ୍ତି, ସେଗୁଡିକୁ ଦୂରେଇ ଦିଅନ୍ତୁ । ଆପଣଙ୍କ ସଚ୍ଚିଦାନନ୍ଦ ସ୍ୱରୂପକୁ ପ୍ରକଟ କରାନ୍ତୁ, ଯାହାକୁ ମୁଁ ସ୍ପଷ୍ଟଭାବରେ ଦେଖିପାରିବି ।

'ସତ୍ୟ ଧର୍ମାୟ ଦୃଷ୍ଟୟେ'ର ଭାବକୁ ଠିକ୍ ଭାବରେ ବୁଝିବା ଦରକାର —'ଭଗବାନ୍ ! ଆପଣ ଆପଣଙ୍କ ସ୍ୱରୂପର ସେହି ଆବରଣକୁ ଦୂରେଇ ଦିଅନ୍ତୁ, ଯାହାଦ୍ୱାରା ସତ୍ୟ-ଧର୍ମରୂପ ଆପଣ ପରମେଶ୍ୱରଙ୍କୁ ପ୍ରାପ୍ତିହେବ ତଥା ଆପଣଙ୍କର ମଙ୍ଗଳମୟ ଶ୍ରୀବିଗ୍ରହର ଦର୍ଶନ ହୋଇପାରିବ ।'

**ପୁଷନ୍ନେକର୍ଷେ ଯମ ସୂର୍ଯ୍ୟ**
**ପ୍ରାଜାପତ୍ୟ ବ୍ୟୂହ ରଶ୍ମୀନ୍ ସମୂହ ।**
**ତେଜୋ ଯତ୍ତେ ରୁପଂ କଲ୍ୟାଣତମଂ**
**ତତ୍ତେ ପଶ୍ୟାମି ଯୋଽସାବସୌ**
**ପୁରୁଷଃ ସୋଽହମସ୍ମି ।।୧୬।।**

**ଅନ୍ୱୟ :—** ପୂଷନ୍ = ହେ ଭକ୍ତପୋଷଣକାରୀ, ଏକର୍ଷେ = ହେ ମୁଖ୍ୟ ଜ୍ଞାନସ୍ୱରୂପ, ଯମ = ହେ ସମସ୍ତଙ୍କର ନିୟନ୍ତା, ସୂର୍ଯ୍ୟ = ହେ ଭକ୍ତ ଅବା ଜ୍ଞାନୀଗଣଙ୍କର ପରମଲକ୍ଷ୍ୟରୂପ, ପ୍ରାଜାପତ୍ୟ = ହେ ପ୍ରଜାପତି ପ୍ରିୟ, ରଶ୍ମୀନ୍ = ଏହି ରଶ୍ମିଗଣଙ୍କୁ, ବ୍ୟୂହ = ଏକତ୍ର କରିନିଅନ୍ତୁ ବା ହଟାଇ ଦିଅନ୍ତୁ, ତେଜଃ = ଏହି ତେଜକୁ, ସମୂହ = ଫେରାଇନିଅନ୍ତୁ ଅବା

ନିଜତେଜରେ ମିଶାଇଦିଅନ୍ତୁ, ଯତ୍ = ଯିଏ, ତେ = ଆପଣଙ୍କ, କଲ୍ୟାଣତମମ୍ = ଅତିଶୟ କଲ୍ୟାଣମୟ, ରୂପମ୍ = ଦିବ୍ୟସ୍ୱରୂପ ଅଟେ, ତତ୍ = ସେହି, ତେ = ଆପଣଙ୍କ ଦିବ୍ୟସ୍ୱରୂପକୁ, ପଶ୍ୟାମି = ମୁଁ ଆପଣଙ୍କ କୃପାରୁ ଧ୍ୟାନ ସହକାରେ ଦେଖୁଅଛି, ଯଃ = ଯିଏ, ଅସୌ = ସେ(ସୂର୍ଯ୍ୟଙ୍କର ଆତ୍ମା) ଅଟନ୍ତି , ଅସୌ = ସେ, ପୁରୁଷଃ = ପରମପୁରୁଷ(ଆପଣଙ୍କର ହିଁ ସ୍ୱରୂପ ଅଟନ୍ତି), ଅହମ୍ = ମୁଁ (ମଧ୍ୟ), ସଃ ଅସ୍ମି = ତାହା ଅଟେ ।

**ମନ୍ତ୍ରାର୍ଥ** :— ହେ ଭକ୍ତପୋଷଣକାରୀ,– ହେ ମୁଖ୍ୟଜ୍ଞାନସ୍ୱରୂପ, ହେ ସର୍ବନିୟନ୍ତା, ହେ ଜ୍ଞାନୀଙ୍କର ପରମଲକ୍ଷ୍ୟରୂପ ବସ୍ତୁ, ହେ ପ୍ରଜାପତି ପ୍ରିୟ ! ସେହି ରଶ୍ମିମାନଙ୍କୁ ଏକତ୍ରିତ କରି ଦୂରେଇ ଦିଅନ୍ତୁ । ସେହି ତେଜକୁ ସଙ୍କୁଚିତ କରିଦିଅନ୍ତୁ, ଯାହାକି ଆପଣଙ୍କର ଅତିଶୟ କଲ୍ୟାଣମୟ ଦିବ୍ୟସ୍ୱରୂପ ଅଟେ । ଆପଣଙ୍କର ସେହି ଦିବ୍ୟସ୍ୱରୂପକୁ ଆପଣଙ୍କ କୃପାରୁ ଧ୍ୟାନ ସାହାଯ୍ୟରେ ଦେଖିପାରୁଛି । ଯାହା ତାଙ୍କର (ସୂର୍ଯ୍ୟଙ୍କର ଆତ୍ମା) ଅଟେ, ତାହା ପରମପୁରୁଷ (ଆପଣଙ୍କର ହିଁ ସ୍ୱରୂପ) ଠାରେ ରହିଛି, ଆଉ ତାହା ମଧ୍ୟ ମୁଁ ଅଟେ ।।୧୬।।

**ସାମାନ୍ୟ ବ୍ୟାଖ୍ୟା**:— ଭଗବାନ୍ ! ଆପଣ ନିଜର ସହଜ କୃପା ସାହାଯ୍ୟରେ ଭକ୍ତମାନଙ୍କର ଭକ୍ତି ସାଧନରେ ଦୃଷ୍ଟିଦେଇ ସେମାନଙ୍କୁ ପୋଷଣ ପ୍ରଦାନ କରିଥାନ୍ତି । ଆପଣ ଜ୍ଞାନୀମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ, ପରମ ଜ୍ଞାନସ୍ୱରୂପ ତଥା ନିଜର ଭକ୍ତମାନଙ୍କୁ ନିଜ ସ୍ୱରୂପର ଯଥାର୍ଥ ଜ୍ଞାନ ପ୍ରଦାନକାରୀ ଅଟନ୍ତି । ଆପଣ ସମସ୍ତଙ୍କୁ ଯଥାଯୋଗ୍ୟ ନିୟମନ,

ନିୟନ୍ତ୍ରଣ ଓ ଶାସନ କରୁଛନ୍ତି । ଆପଣ ହିଁ ଭକ୍ତ ତଥା ଜ୍ଞାନୀର ଲକ୍ଷ୍ୟ ଅଟନ୍ତି । ଅବିଜ୍ଞେୟ ହୋଇ ମଧ୍ୟ ଆପଣଙ୍କର ଭକ୍ତବତ୍ସଳ ସ୍ୱଭାବ କାରଣରୁ ଭକ୍ତି ଦ୍ୱାରା ସେମାନଙ୍କୁ ବୋଧ ହୋଇପାରନ୍ତି । ଆପଣ ପ୍ରଜାପତିଙ୍କର ମଧ୍ୟ ଅଧିକ ପ୍ରିୟ ଅଟନ୍ତି । ହେ ପ୍ରଭୁ ! ଏହି ସୂର୍ଯ୍ୟମଣ୍ଡଳର ତପ୍ତ ରଶ୍ମିଗୁଡିକୁ ଏକତ୍ରିତକରି ନିଜ ଭିତରେ ଲୁପ୍ତ କରାଇଦିଅନ୍ତୁ । ତାହାର ଉଗ୍ରତେଜକୁ ସଙ୍କୁଚିତକରି ନିଜ ଭିତରେ ସନ୍ନିବେଶିତ କରାନ୍ତୁ, ଯାହା ଫଳରେ ମୁଁ ଆପଣଙ୍କର ଦିବ୍ୟସ୍ୱରୂପକୁ ପ୍ରତ୍ୟକ୍ଷ କରିପାରିବି । ଏବେ ତ ମୁଁ ଆପଣଙ୍କ କୃପାରୁ ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟ ନିଧିରୂପକ ପରମ କଲ୍ୟାଣମୟ, ଦିବ୍ୟ ସଚ୍ଚିଦାନନ୍ଦ ସ୍ୱରୂପକୁ ଧ୍ୟାନଦୃଷ୍ଟି ସାହାଯ୍ୟରେ ଦର୍ଶନ କରିପାରୁଛି । ଏହା ସହିତ ବୁଦ୍ଧି ସାହାଯ୍ୟରେ ବୋଧ ମଧ୍ୟ ହୋଇପାରୁଛି —ଆପଣ ପରମପୁରୁଷ ତଥା ଏହି ସୂର୍ଯ୍ୟ ଏବଂ ସମସ୍ତ ବିଶ୍ୱର ଆତ୍ମା ହୋଇଛନ୍ତି । ଆପଣ ମୋର ମଧ୍ୟ ଆତ୍ମା ଅଟନ୍ତି, ଅତଃ ମୁଁ ଆପଣ ଅଟେ ଓ ଆପଣ ମୁଁ ଅଟନ୍ତି ।

**ବାୟୁରନିଳମମୃତମଥେଦଂ**<br>**ଭସ୍ମାନ୍ତଂ ଶରୀରମ୍ ।**<br>**ଓଁ କ୍ରତୋ ସ୍ମର କୃତଂ ସ୍ମର**<br>**କ୍ରତୋ ସ୍ମର କୃତଂ ସ୍ମର ।।୧୭।।**

**ଅନ୍ୱୟ :—** ଅଥ = ଅବ, ବାୟୁଃ = ଯେଉଁ ପ୍ରାଣ ଓ ଇନ୍ଦ୍ରିୟଗଣ, ଅମୃତମ୍ = ଅବିନାଶୀ, ଅନିଳମ୍ = ସମଷ୍ଟି ବାୟୁତତ୍ତ୍ୱରେ, (ପ୍ରବିଶନ୍ତୁ) = ପ୍ରବିଷ୍ଟ ହୋଇଯାଆନ୍ତୁ, ଇଦମ୍ = ଏହି, ଶରୀରମ୍ = ସ୍ଥୂଳଶରୀର,

ଭସ୍ମାନ୍ତମ୍ = ଅଗ୍ନିରେ ଜଳି ଭସ୍ମରୂପ, (ଭୂୟାତ୍) = ହୋଇଯାଉ, ଓଁ = ହେ ସଚ୍ଚିଦାନନ୍ଦଘନ, କ୍ରତୋ = ଯଜ୍ଞମୟ ଭଗବାନ୍, ସ୍ମର = (ଆପଣ ମୋ'ଭଳି ଭକ୍ତକୁ) ସ୍ମରଣ କରନ୍ତୁ, କୃତମ୍ = ମୋ'ଦ୍ୱାରା କରାଯାଇଥିବା କର୍ମକୁ, ସ୍ମର = ସ୍ମରଣକରନ୍ତୁ, କ୍ରତୋ = ହେ ଯଜ୍ଞମୟ ଭଗବାନ୍, ସ୍ମର = (ଆପଣ ମୋ'ଭଳି ଭକ୍ତକୁ) ସ୍ମରଣ କରନ୍ତୁ, କୃତମ୍ = (ମୋ') କର୍ମକୁ, ସ୍ମର = ସ୍ମରଣ କରନ୍ତୁ ।

**ମନ୍ତ୍ରାର୍ଥ** :— ଏବେ ଏହି ପ୍ରାଣ- ଏବଂ ଇନ୍ଦ୍ରିୟଗଣ ଅବିନାଶୀ ସମଷ୍ଟି ବାୟୁତତ୍ତ୍ୱରେ ପ୍ରବିଷ୍ଟ ହୋଇଯାଆନ୍ତୁ । ଏହି ସ୍ଥୂଳ ଶରୀର ଅଗ୍ନିରେ ଜଳି ଭସ୍ମୀସାତ୍ ହେଉ । ହେ ସଚ୍ଚିଦାନନ୍ଦଘନ ଓମ୍‌କାର ରୂପ, ଯଜ୍ଞମୟ ଭଗବାନ୍ ! ଆପଣଙ୍କୁ ସ୍ମରଣ କରୁଛି, ମତ୍‌କୃତ କର୍ମକୁ ସ୍ମରଣ କରୁଛି । ହେ ଓମ୍‌କାରରୂପୀ ଭଗବାନ୍ ! ଆପଣ ମୋତେ ସ୍ମରଣ କରନ୍ତୁ, ମତ୍ କୃତ କର୍ମକୁ ମଧ୍ୟ ସ୍ମରଣ କରନ୍ତୁ ।।୧୭।।

**ସାମାନ୍ୟ ବ୍ୟାଖ୍ୟା** :— ପରମଧାମ ଗମନ କରିବାକୁ ଯାଉଥିବା ସାଧକ ନିଜର ପ୍ରାଣ, ଇନ୍ଦ୍ରିୟ ଓ ଶରୀରକୁ ନିଜଠାରୁ ଅଲଗା ମନେକରି ସେସବୁକୁ ସ୍ୱ-ସ୍ୱ ଉପାଦାନ ତତ୍ତ୍ୱରେ ସବୁବେଳ ପାଇଁ ବିଲୀନ କରାଇବା ଏବଂ ସୂକ୍ଷ୍ମ ତଥା ସ୍ଥୂଳ ଶରୀରର ସର୍ବଥା ବିଘଟନ କରାଇବା ଆବଶ୍ୟକ । ତେଣୁ କୁହାଯାଏ କି, ପ୍ରାଣାଦିର ସମଷ୍ଟି ବାୟୁ ଆଦିରେ ପ୍ରବିଷ୍ଟ ହେଉ, ସ୍ଥୂଳ ଶରୀର ଜଳି ଭସ୍ମ ହୋଇଯାଉ । ତଥାପି ସେ ଆରାଧ୍ୟଦେବ ପରବ୍ରହ୍ମଙ୍କୁ ପ୍ରାର୍ଥନା କରିବା ଦରକାର, ‘‘ହେ ଯଜ୍ଞମୟ ପରମାତ୍ମା ! ସଚ୍ଚିଦାନନ୍ଦ ବିଜ୍ଞାନ ସ୍ୱରୂପ ପରମେଶ୍ୱର !

ଆପଣ ଆପଣଙ୍କର ନିଜ ଜନ ଭାବରେ  ମୋତେ ଏବଂ ମୋର କର୍ମକୁ ସ୍ମରଣ କରନ୍ତୁ । ସ୍ୱଭାବତଃ ଆପଣ ମତ୍‌କୃତ କର୍ମମାନଙ୍କର ବିବେଚନ କରନ୍ତୁ, ନିର୍ଦ୍ଦେଶ କରିଥିବା କର୍ତ୍ତବ୍ୟକୁ ଆପଣଙ୍କ ଇଚ୍ଛା ବହିର୍ଭୁକ୍ତ ଭାବରେ କରାଯାଇଛି କି ନାହିଁ ବିଚାର କରନ୍ତୁ । ମୋର ଭକ୍ତି, ନିଷ୍ଠା ଓ ଜୀବନର ମୂଲ୍ୟକୁ ଯେଉଁଭଳି ଭାବରେ ପରିଚାଳିତ କରିବାପାଇଁ ଇଚ୍ଛା କରିଥିଲେ ସେଭଳି ହୋଇଛି ନାଁ ନାହିଁ ପରଖି ତାହାର କାରଣ ଓ ପ୍ରତିକାର ନିର୍ଣ୍ଣୟ କରନ୍ତୁ କାରଣ ମୋର ଏଥିରେ କୌଣସି ପ୍ରକାର ସ୍ୱତନ୍ତ୍ର ସ୍ୱାର୍ଥ ନାହିଁ ତାହା ମୁଁ ବୁଝିପାରୁଛି, ଆପଣ ମଧ୍ୟ ତାହା ଜାଣିପାରୁଥିବେ । ଏହିଭଳି ଆପଣ ଓ ମୋ ଭିତରେ ଯେଉଁ ଅଭେଦ ଦୃଷ୍ଟି ରହିଛି, ତାହାକୁ ମୋ ଭିତରେ ବଳବତ୍ତର କରାନ୍ତୁ । ପରମଗତି ପ୍ରାପ୍ତ ହେବାପାଇଁ ଆପଣଙ୍କର ସେବାକୁ ସମ୍ପୂର୍ଣ୍ଣରୂପେ ମୋ' ମଧ୍ୟରେ ଦୃଢ କରାନ୍ତୁ । ଯଦି ଆପଣଙ୍କର ଗତି ସର୍ବଶ୍ରେଷ୍ଠ ଗତି ହୁଏ, ତେବେ ମୋର ମଧ୍ୟ ତଦ୍ରୂପ ଗତି କରାନ୍ତୁ ।''

ଏହିଭଳି ଅଭିପ୍ରାୟ ରଖି ଭକ୍ତ ନିଜକୁ ତାଙ୍କ ପାଖରେ ବାରମ୍ବାର ସମର୍ପଣ କରିଥାଏ । ନିଜର ଭକ୍ତି ତଥା ଜ୍ଞାନକୁ ଠିକ୍ ଭାବରେ ବୋଧହୋଇ କର୍ମ-ଅକର୍ମର ବିବେକ ଓ ବିଚାର ପ୍ରୟୋଗକରି ବୈରାଗ୍ୟର କ୍ଷେତ୍ର ପ୍ରସ୍ତୁତ ପୂର୍ବକ ଅବଶିଷ୍ଟ ଜୀବନକୁ ସାର୍ଥକ କରାଇବା ପାଇଁ ଚେଷ୍ଟା କରିବା ଆବଶ୍ୟକ । ସେଥିପାଇଁ ସେ କହିଥାଏ, ''ହେ ଭଗବାନ୍ ! ଆପଣ ମୋର ଏବଂ ମୋ' କର୍ମମାନଙ୍କର ସ୍ମରଣ କରନ୍ତୁ, ଅନ୍ତଃକାଳରେ ମୁଁ ଆପଣଙ୍କ ସ୍ମୃତିମଧ୍ୟକୁ

ଆସିପାରିବି ଯଦ୍ଵାରା ମୋର ନିଶ୍ଚିତଗତି ପ୍ରାପ୍ତି ହେବ । ଫଳରେ ମୁଁ ଆପଣଙ୍କ ସେବାରେ ନିୟୋଜିତ ହେବି । ସଂସାରର ଆବର୍ତ୍ତ ମଧ୍ୟରେ ପ୍ରବେଶ କରିବିନାହିଁ .... ଇତ୍ୟାଦି ।''

**ଅଗ୍ନେ ନୟ ସୁପଥା ରାୟେ ଅସ୍ମାନ୍**
**ବିଶ୍ଵାନି ଦେବ ବୟୁନାନି ବିଦ୍ଵାନ୍ ।**
**ଯୁଯୋଧ୍ୟସ୍ମଜ୍ଜୁହୁରାଣମେନୋ ଭୂୟିଷ୍ଠାଂ**
**ତେ ନମଉକ୍ତିଂ ବିଧେମ ।।୧୮।।**[୧୪]

**ଅନ୍ଵୟ :—** ଅଗ୍ନେ = ହେ ଅଗ୍ନି ଅଧିଷ୍ଠାତୃ ଦେବତା !, ଅସ୍ମାନ୍ = ଆମକୁ , ରାୟେ = ପରମଧନରୂପ ପରମେଶ୍ଵରଙ୍କର ସେବାରେ ଲାଗିବାପାଇଁ, ସୁପଥା = ସୁନ୍ଦରଶୁଭ(ଉତ୍ତରାୟଣ)ମାର୍ଗରେ, ନୟ = (ଆପଣ) ନେଇଚାଲନ୍ତୁ, ଦେବ = ହେ ଦେବ, (ଆପଣ ଆମର) ବିଶ୍ଵାନି = ସମ୍ପୂର୍ଣ୍ଣ, ବୟୁନାନି = କର୍ମକୁ, ବିଦ୍ଵାନ୍ = ଜାଣନ୍ତି, (ଅତଃ) ଅସ୍ମତ୍ = ଆମର, ଜୁହୁରାଣମ୍ = ଏହିମାର୍ଗର ପ୍ରତିବନ୍ଧକ, ଏନଃ = (ଯେଉଁ) ପାପ ରହିଛି (ସେ ସବୁକୁ), ଯୁଯୋଧି = (ଆପଣ) ଦୂର କରିଦିଅନ୍ତୁ, ତେ = ଆପଣଙ୍କୁ, ଭୂୟିଷ୍ଠାମ୍ = ବାରମ୍ଵାର, ନମଉକ୍ତିମ୍ = ନମସ୍କାର ବଚନ, ବିଧେମ = (ଆମେ) କହୁଛୁ-- ବାରବାର ନମସ୍କାର କରୁଛୁ ।

**ମନ୍ତ୍ରାର୍ଥ :—** ହେ ଅଗ୍ନି ଅଧିଷ୍ଠାତୃ ଦେବତା ! ଆମକୁ ପରମଧନରୂପ ପରମେଶ୍ଵରଙ୍କର ସେବାରେ ନିଯୁକ୍ତ କରିବାପାଇଁ ସୁନ୍ଦର ଶୁଭ (ଉତ୍ତରାୟଣ) ମାର୍ଗରେ ନେଇଚାଲନ୍ତୁ । ହେ ଦେବ ! ଆପଣ

ଆମର ସମଗ୍ର କର୍ମମାନଙ୍କର ଜ୍ଞାତା ଅଟନ୍ତି । ଅତଃ ଆମର ସେହି ମାର୍ଗର ପ୍ରତିବନ୍ଧକ ଯେଉଁ ପାପ-ତାପ ରହିଛି ତାହାକୁ ଦୂର କରାଇଦିଅନ୍ତୁ ବୋଲି ବାରମ୍ବାର ନମସ୍କାର ପୂର୍ଣ୍ଣ ବଚନରେ ପ୍ରଣତି ଜଣାଉଅଛୁ ।।୧୮।।

**ସାମାନ୍ୟ ବ୍ୟାଖ୍ୟା** :— ସାଧକ କହିଥାଏ —ହେ ଅଗ୍ନି ଦେବ ! ଏବେ ମୁଁ ମୋର ପରମପ୍ରଭୁଙ୍କ ସେବାରେ ପହଞ୍ଚିବା ପାଇଁ ଏବଂ ତାଙ୍କ ସେବାରେ ନିଯୁକ୍ତ ହେବାପାଇଁ ଚାହୁଁଛି । ଆପଣ ଶୀଘ୍ର ମୋତେ ପରମ ସୁନ୍ଦର ମଙ୍ଗଳମୟ ଉତ୍ତରାୟଣ ମାର୍ଗରେ ତାଙ୍କର ପରମ ଧାମରେ ପହଞ୍ଚାଇ ଦିଅନ୍ତୁ । ଆପଣ ମୋର କର୍ମମାନଙ୍କୁ ଜାଣିଛନ୍ତି, ଆପଣଙ୍କ ପ୍ରଭାବରୁ ଏହି ଶରୀରରେ ଭିନ୍ନ ଭିନ୍ନ ସ୍ଥାନରେ, ଭିନ୍ନ ଭିନ୍ନ ଆକାଂକ୍ଷାରୂପ ଅଗ୍ନି ପ୍ରଜ୍ୱଳିତ ହେଉଛି, ସେଗୁଡିକର ନିବାରଣ ହେବା ଏବଂ ସେଥିରୁ ନିସ୍ତାର ପାଇବା ପାଇଁ ମୋତେ ଉତ୍ତରାୟଣ ମାର୍ଗରେ ପରମଧାମକୁ ନେଇଯାଆନ୍ତୁ । ଆପଣ ମୋର କର୍ମମାନଙ୍କୁ ଠିକ୍‌ଭାବରେ ଜାଣିଛନ୍ତି । ମୁଁ ଜୀବନକାଳ ମଧ୍ୟରେ ତାଙ୍କର (ଭଗବାନଙ୍କର) ଭକ୍ତି କରିଛି, ଆହୁରି ତାଙ୍କ କୃପାରୁ ଅବା ଧ୍ୟାନ ବଳରେ ତାଙ୍କର ଦିବ୍ୟସ୍ୱରୂପର ଦର୍ଶନ ତଥା ତାଙ୍କ ନାମୋଚ୍ଚାରଣ କରିପାରୁଛି । ତଥାପି ଆପଣଙ୍କ ଧ୍ୟାନରେ ମୋର ଏଭଳି କିଛି କର୍ମ ରହିଯାଇଥିବ, ଯାହା ଉକ୍ତ ଉତ୍ତରାୟଣ ଗତିର ବାଧକ ହୋଇପାରେ, ତେଣୁ ଆପଣଙ୍କୁ ନିବେଦନ କରୁଛି କି କୃପାକରି ସେସବୁକୁ ନଷ୍ଟ କରିଦିଅନ୍ତୁ । ସେଥିପାଇଁ ମୁଁ ଆପଣଙ୍କୁ ବାରମ୍ବାର ବିନୟପୂର୍ବକ ନମସ୍କାର ମଧ୍ୟ ଜଣାଉଅଛି ।

ମୋତେ ସେହି ଧାମରେ ପହଞ୍ଚାଇବା ପାଇଁ ସହାୟକ ହୁଅନ୍ତୁ । ଯେଉଁଠାରେ ସାମାନ୍ୟ ବୁଦ୍ଧି ଦୂରହୋଇ ସଦ୍‌ବୁଦ୍ଧି ତଥା ସଦ୍‌ଜ୍ଞାନ ଲାଭପୂର୍ବକ ନିବାସ କରିପାରିବି ଅର୍ଥାତ୍ ପାର୍ଥିବ ବୁଦ୍ଧି ଜ୍ଞାନଠାରୁ ଉର୍ଦ୍ଧ୍ୱକୁ ଉଠିଯାଇ ଆକାଂକ୍ଷା ବିରହିତ ଭାବରେ ସଂସାର ଚକ୍ରର ଆବର୍ତ୍ତ ମଧ୍ୟରେ ପ୍ରବେଶ କରିବି ନାହିଁ ।

(୧୭ ଏବଂ ୧୮ ମନ୍ତ୍ରର ଅର୍ଥକୁ ପ୍ରତ୍ୟେକ ମୁମୂର୍ଷୁ ଜନ ସ୍ମରଣ କରିବା ବିଧେୟ । ଏହି ମନ୍ତ୍ରାନୁସାରେ ଅନ୍ତଃକାଳରେ ଭଗବାନଙ୍କର ନାମ ଉଚ୍ଚାରଣ ପ୍ରତ୍ୟେକ ମନୁଷ୍ୟର କଲ୍ୟାଣର ଦ୍ୱାର ସଦୃଶ । ମୁମୂର୍ଷୁ ଜନ ନିଜର ଲାଭପାଇଁ ଉପରୋକ୍ତ ମନ୍ତ୍ରଦ୍ୱୟର ଭାବାର୍ଥକୁ ଠିକ୍ ଭାବରେ ବୋଧହେବା ବିଶେଷ ଆବଶ୍ୟକ । 'ହେ ପରମାତ୍ମା ! ମୋର ଏଇ ଯେଉଁ ଇନ୍ଦ୍ରିୟଗୁଡିକ ଓ ପ୍ରାଣ ରହିଛନ୍ତି, ସେମାନେ ସ୍ୱ-ସ୍ୱ କାରଣତତ୍ତ୍ୱରେ ଲୀନ ହୁଅନ୍ତୁ ଅର୍ଥାତ୍ ଯାହାର ଯେଉଁଠି ନିବାସ କରିବା ପରମାବଶ୍ୟକ ସେମାନେ ସେହି ସ୍ଥାନରେ ଉପବିଷ୍ଟ ହୁଅନ୍ତୁ । ସ୍ଥୂଳ ଶରୀର ମଧ୍ୟ ଭସ୍ମୀସାତ୍ ହେଉ । ଏମାନଙ୍କ ପ୍ରତି ମୋଦ ମନରେ କୌଣସି ପ୍ରକାର ଆସକ୍ତି ନ ରହୁ । ହେ ଯଜ୍ଞମୟ ପରମାତ୍ମା ! ଆପଣ ସୂର୍ଯ୍ୟ ରୂପରେ, ଯଜ୍ଞାଗ୍ନି ରୂପରେ ଅବା ଦାବାନଳ ରୂପରେ ଭିନ୍ନ ଭିନ୍ନ ସ୍ଥାନରେ ଭିନ୍ନତା ସ୍ୱୀକାର କରିଛନ୍ତି । ହେଲେ ଆପଣ କୃପାକରି ମୋର ଏବଂ ମୋ କର୍ମମାନଙ୍କର ସ୍ମରଣ କରନ୍ତୁ । ଏହାର ଅର୍ଥ- ପରମାତ୍ମାଙ୍କୁ ନିବେଦନ କରାଯାଉଛି, ଆପଣ ଜୀବନ ଅବଧିରେ ଯେଉଁ ଯେଉଁ ପଥ ପ୍ରଦର୍ଶିତ କରାଇଛନ୍ତି ଆଉ ସେଗୁଡିକୁ ଯେଉଁଭଳି

ଭାବରେ ସମ୍ପନ୍ନ କରିବାପାଇଁ ଅନ୍ତଃକରଣ ମଧ୍ୟରେ ରହି ନିର୍ଦ୍ଦେଶ ଦେଇଛନ୍ତି, ସେଗୁଡିକୁ ଯେ ମୁଁ ପାଳନ କରିନାହିଁ ତାହା ନୁହେଁ । ସୁ ଅବା କୁ ଭେଦରେ ତାହା ମୋର କର୍ମଫଳ ଓ ଗତିର ବାଧକହୋଇ ଠିଆ ହୋଇପାରେ କିନ୍ତୁ ଆପଣଙ୍କୁ ନିବେଦନ ଜଣାଉଛି, ସେଗୁଡ଼ିକ ଆପଣଙ୍କ ନିର୍ଦ୍ଦେଶରେ ହିଁ ହୋଇଛି । ଏବେ ମୋର ପ୍ରକୃତ ଗତି ପ୍ରଦାନକରନ୍ତୁ । ଆପଣଙ୍କୁ ସ୍ମରଣ ଓ ମନନକରି ମୋର କର୍ମ-ଅକର୍ମ ସବୁ ପବିତ୍ର ହୋଇଯାଇଛି, ତେଣୁ ଏବେ ବୋଧହୁଏ ମୁଁ ଆପଣଙ୍କ ଚରଣରେ ସ୍ଥାନ ପାଇବାକୁ ଯୋଗ୍ୟ, ତେଣୁ ମୋତେ ନିକଟକୁ ନେଇଯାଆନ୍ତୁ ।'

'ହେ ଅଗ୍ନିସ୍ୱରୂପ ପରମେଶ୍ୱର ! ଆପଣ ହିଁ ମୋର ଧନ ଏବଂ ଆପଣ ମୋର ସର୍ବସ୍ୱ ଅଟନ୍ତି । ଆପଣଙ୍କ ପ୍ରାପ୍ତି ପାଇଁ ମୋତେ ଉତ୍ତମ ମାର୍ଗରେ ନେଇ ନିଜ ପାଖରେ ପହଞ୍ଚାଇ ଦିଅନ୍ତୁ । ମୋର ଯେତେସବୁ ଶୁଭାଶୁଭ କର୍ମ ରହିଛି, ସେସବୁ ଆପଣଙ୍କୁ ଅଜଣା ନୁହେଁ । ଆପଣ ସବୁକିଛି ଜାଣନ୍ତି । ମୁଁ ଉକ୍ତ କର୍ମମାନଙ୍କର ଆଶ୍ରାକରି ଆପଣଙ୍କୁ ପାଇବାର ଯେଉଁ ଆଶା ମୋ' ଭିତରେ ଜାଗ୍ରତ ହୋଇଛି, ତାହା ହୁଏତ ମୋର ଏହି କର୍ମମାନଙ୍କର ପ୍ରଭାବରୁ ସମ୍ଭବ ହୋଇ ନ ପାରିଲେ ମୁଁ ଆପଣଙ୍କର ସେହି ସ୍ଥିତିକୁ କାମନା କରନ୍ତି କିଭଳି ? ତେଣୁ ଦୟାକରି ମୋତେ ଆପଣେଇ ନିଅନ୍ତୁ । ମୋ ଭିତରେ ଜ୍ଞାନର ଗର୍ବ ଅଥବା କର୍ମର ଗର୍ବ ନ ରହୁ କିମ୍ବା ଆପଣଙ୍କୁ ପାଇବା ଜନିତ ଆକାଂକ୍ଷା ପାଇଁ କର୍ମ ବି ନ ରହୁ । ଏପରିକି ସଂସାରାବର୍ତ୍ତକୁ ଆସିବା ଏବଂ ନ

ଆସିବାର ଯେଉଁ ଲାଳସା ତାହା ମଧ୍ୟ ନ ରହୁ । ଆପଣଙ୍କ ପ୍ରାପ୍ତିରେ ମୋତେ କୌଣସି ପ୍ରକାର ପ୍ରତିବନ୍ଧକ ନ ରହୁ କି ଆପଣ ମୋତେ କୌଣସି ପ୍ରକାରରେ ଦୂରେଇ ନ ଦିଅନ୍ତୁ । ଯେଉଁଥିପାଇଁ ମୁଁ ଆପଣଙ୍କ ନିକଟରେ ବାରମ୍ବାର ପ୍ରଣାମ ଓ ପ୍ରଣତି ଜଣାଉଅଛି ।

※ ※ ※

## —ପୁନଃ ଶାନ୍ତିପାଠ —

ଓଁ

**ପୂର୍ଣ୍ଣମଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମୁଦଚ୍ୟତେ ।**
**ପୂର୍ଣ୍ଣସ୍ୟ ପୂର୍ଣ୍ଣମାଦାୟ ପୂର୍ଣ୍ଣମେବା ବଶିଷ୍ୟତେ ।।**
**ଓଁ ଶାନ୍ତିଃ ! ଶାନ୍ତିଃ !! ଶାନ୍ତିଃ !!!**

※ ※ ※

# ଈଶାବାସ୍ୟୋପନିଷଦ
# (ସାରାଂଶ)

ଜଗତର ପୁନର୍ଜାଗରଣ ନିମନ୍ତେ ପରମେଶ୍ୱର ହିରଣ୍ୟଗର୍ଭଙ୍କୁ ବେଦ ଶିକ୍ଷାଦେଇଥିଲେ । ଅତ୍ରି ଓ ମରୀଚିଙ୍କ ସମେତ ଦଶଜଣ ମାନସପୁତ୍ରଙ୍କୁ ହିରଣ୍ୟଗର୍ଭ ତାଙ୍କର ଏହି ବେଦଶିକ୍ଷା ପ୍ରଦାନ କଲେ । ସେହିମାନଙ୍କ ଠାରୁ ବେଦଗୁଡ଼ିକ ପୁରୁଷ ପୁରୁଷ ଧରି ମନୁଷ୍ୟ ସମାଜରେ ପ୍ରଚାରିତ ହୋଇ ଆସୁଅଛି । ଉକ୍ତ ବେଦଗୁଡିକର ପ୍ରଚାରକମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ବେଦବ୍ୟାସ ଦ୍ୱାପର ଯୁଗରେ ତାଙ୍କ ଶିଷ୍ୟମାନଙ୍କୁ ବୈଦିକ ଜ୍ଞାନର ଶିକ୍ଷା ଦେଇଥିଲେ ।

ମହର୍ଷି ବେଦବ୍ୟାସ ମହାଗ୍ରନ୍ଥଗୁଡ଼ିକର ପ୍ରସାର କାର୍ଯ୍ୟରେ ଯେତେବେଳେ ଏହି ବେଦଗୁଡ଼ିକୁ ତାଙ୍କ ଶିଷ୍ୟମାନଙ୍କୁ ପଢାଉଥିଲେ, ସେତେବେଳେ ଯାଜ୍ଞବଲ୍କ୍ୟ ନାମରେ ତାଙ୍କର ଜଣେ ଶିଷ୍ୟ ଥିଲେ । ଯାଜ୍ଞବଲ୍କ୍ୟଙ୍କର ଭକ୍ତି ଓ ଏକାଗ୍ରତା ଦେଖି ସୂର୍ଯ୍ୟଦେବ ପ୍ରୀତ ହେଲେ ଓ ଗୋଟିଏ ବାଜି (ଘୋଡ଼ା) ବେଶରେ ମୁନିଙ୍କୁ ଯଜୁର୍ବେଦର ନୂତନ ଜ୍ଞାନ ପ୍ରଦାନ କଲେ । ଏହିପରି ବାଜି ଶିକ୍ଷା ଦେଇଥିବା ଅଂଶର ନାମ ହେଲା 'ବାଜଶନେି' । ବେଦବ୍ୟାସ ପ୍ରବର୍ତ୍ତନ କରିଥିବା ଯଜୁର୍ବେଦର ନାମ ଦ୍ଧକୃଷ୍ଣ ଯଜୁର୍ବେଦଦ ଏବଂ ଯାଜ୍ଞବଲ୍କ୍ୟ ପ୍ରବର୍ତ୍ତନ କରିଥିବା ବେଦର ନାମ 'ଶୁକ୍ଳଯଜୁର୍ବେଦ' ।

ତହିଁର ପ୍ରଥମ କେତୋଟି ଅଧ୍ୟାୟରେ ଅଛି କର୍ମକାଣ୍ଡ ସମ୍ବନ୍ଧୀୟ ମନ୍ତ୍ର ଓ ଶେଷ ଅଧ୍ୟାୟଗୁଡ଼ିକ ଜ୍ଞାନକାଣ୍ଡ ସମ୍ବନ୍ଧୀୟ ମନ୍ତ୍ର । ଈଶାବାସ୍ୟ ଉପନିଷଦ୍ ଏହି ଜ୍ଞାନକାଣ୍ଡରେ ବିଦ୍ୟମାନ । ଏହି ଉପନିଷଦ୍‌ର ପ୍ରଥମ ମନ୍ତ୍ରଟି 'ଈଶାବାସ୍ୟମ୍' ହୋଇଥିବାରୁ ଏହାର ଏପରି ନାମକରଣ ହୋଇଅଛି ।

ଉପନିଷଦଟିର ତାତ୍ପର୍ଯ୍ୟ ହେଲା ଏହି ଚରାଚର ବିଶ୍ୱ ପରମେଶ୍ୱରଙ୍କ ପ୍ରକାଶ ମାତ୍ର, ଏହା ତାଙ୍କର ଶରୀର । ବିଶ୍ୱ ଓ ବିଶ୍ୱର ପ୍ରଭୁଙ୍କୁ ଅଲଗା ବୋଲି ଭାବିବା ଭୁଲ । ଏପରି ଭିନ୍ନ ଭାବ ଭ୍ରାନ୍ତିକାରକ — ଏହା ମଣିଷର କଳ୍ପନା ମାତ୍ର । ଠିକ୍ ଯେପରି ପାଣି ତଳେ ତୁମର ଛାୟା ତୁମଠାରୁ ଭିନ୍ନ ନୁହେଁ, ସେହିପରି ଜଗତ୍ (ଯାହା ତୁମର ଅଜ୍ଞତା ଉପରେ ପରମେଶ୍ୱରଙ୍କର ଛାୟା ସଦୃଶ) ଓ ଜଗତର ପ୍ରଭୁଙ୍କ ଭିତରେ କିଛି ତଫାତ୍ ନାହିଁ ।

ମନୁଷ୍ୟ ଯେ ପର୍ଯ୍ୟନ୍ତ ଏହି ଭ୍ରାନ୍ତିର ଶିକାର ହେଉଥିବ, ସେ ପର୍ଯ୍ୟନ୍ତ ନିଜ ଭିତରେ ଥିବା ପ୍ରକୃତ ସତ୍ତାକୁ ଚିହ୍ନି ପାରିବ ନାହିଁ ବରଂ ସେ କୁଚିନ୍ତା, କୁବାକ୍ୟ ଓ କୁକର୍ମରେ ଲିପ୍ତ ହୋଇଯିବ । ତା'ପରେ କର୍ତ୍ତା ଓ ଭୋକ୍ତା — ଏହି ଦ୍ୱୈତଭାବ ଚାଲିଯିବ ଏବଂ ତୁମେ ସର୍ବକର୍ମ ସନ୍ନ୍ୟାସ ଅବସ୍ଥା ପ୍ରାପ୍ତ ହେବ । ଯାହାକି ଏହି ଉପନିଷଦରେ ମୋକ୍ଷର ପଥ ବୋଲି ନିର୍ଦ୍ଦେଶ କରାଯାଇଛି ।

ମନୁଷ୍ୟର ତିନିଗୋଟି ବାସନା(କାମିନୀ, କାଞ୍ଚନ, ଅପତ୍ୟ)କୁ ବିନାଶକରି ଯେଉଁ ସନ୍ନ୍ୟାସ ଲାଭ କରାଯାଏ, ତାହା ଚିତ୍ତଶୁଦ୍ଧି ବିନା ଦୁଃସାଧ୍ୟ । ଉକ୍ତ ଉପନିଷଦରେ ଏହି ପ୍ରକାରର ସନ୍ନ୍ୟାସ ଲାଭକରିବାର

ଉପାୟ ବର୍ଣ୍ଣନା କରାଯାଇଛି । ସେଥିରେ କୁହାଯାଇଛି, ଶାସ୍ତ୍ରରେ କୁହାଯାଇଥିବା ଅଗ୍ନିହୋତ୍ର ଆଦି କର୍ମ କର, ମନରେ ଏହି ବିଶ୍ୱାସ ରଖ କି, ମୋକ୍ଷ ନିମନ୍ତେ ଏ ସବୁ କର୍ମ କରିବାକୁ ପଡ଼ିବ ଓ ଏହି କର୍ମରେ ନିଯୁକ୍ତ ଥିବାଯାଏଁ ତୁମକୁ କୌଣସି ପାପ ସ୍ପର୍ଶ କରିପାରିବ ନାହିଁ । ମାତ୍ର ଏସବୁ କର୍ମରେ ଫଳାସକ୍ତି ନ ରଖି ନିଷ୍କାମ ଭାବରେ ଏହାର ସାଧନ କଲେ ସାଧକର ସକଳ ଅଶୁଦ୍ଧତା ଧୀରେ ଧୀରେ ପରିଶୁଦ୍ଧ ହୋଇପାରିବ । ଶୁଦ୍ଧ ମାନସ ହିଁ ଜ୍ଞାନ; ଏହା ସନ୍ନ୍ୟାସର ଶେଷ ଅବସ୍ଥା ।

କର୍ମ କଲାବେଳେ ତୁମେ ଯଦି ନିଜକୁ ସକଳ କାମନାରୁ ମୁକ୍ତ ରଖିପାରିବ, ତେବେ କୌଣସି କଳୁଷ ତୁମକୁ ସ୍ପର୍ଶ କରିବ ନାହିଁ । ଏହି ଉପନିଷଦର ୧୮ଟି ମନ୍ତ୍ର ମଧ୍ୟରୁ ପ୍ରଥମ ଦୁଇଟି ମନ୍ତ୍ରରେ ମୁକ୍ତି ଓ ସେହି ସମ୍ବନ୍ଧରେ ଆଲୋକପାତ କରାଯାଇଛି, ଅନ୍ୟ ୧୬ଗୋଟି ମନ୍ତ୍ର ଉକ୍ତ ତତ୍ତ୍ୱକୁ ବୁଝାଇ ପ୍ରଥମ ଦୁଇଟି ମନ୍ତ୍ରର ଟୀକା ରୂପେ ପ୍ରତୀୟମାନ ହୋଇଛି ।

ତୃତୀୟ ମନ୍ତ୍ରଠାରୁ ଅଷ୍ଟମ ମନ୍ତ୍ର ଯାଏଁ ଆତ୍ମାର ଉପଲବ୍ଧିରେ ବାଧା ଜନ୍ମାଉଥିବା ଅବିଦ୍ୟାକୁ ନିନ୍ଦାକରି ଆତ୍ମାର ପ୍ରକୃତ ଗୁଣବର୍ଣ୍ଣନା କରାଯାଇଛି । ଚତୁର୍ଥ ଓ ପଞ୍ଚମ ଶ୍ଳୋକରେ ଆତ୍ମତତ୍ତ୍ୱ ଓ ତତ୍ପରେ ଆତ୍ମତତ୍ତ୍ୱ ସମ୍ବନ୍ଧରେ ଜ୍ଞାନ କି ଫଳ ପ୍ରଦାନ କରେ ତାହାର ବର୍ଣ୍ଣନା ହୋଇଛି । ନବମ ଶ୍ଳୋକରେ କର୍ମ ମୁକ୍ତିର ମର୍ମ(ଯେଉଁମାନେ ସମ୍ପୂର୍ଣ୍ଣ ବୈରାଗ୍ୟ ଧାରଣ କରିବାରେ ଅସମର୍ଥ, ମାତ୍ର ନୈତିକ ଅଭିବୃଦ୍ଧି ଓ ଆତ୍ମଶୁଦ୍ଧିର କର୍ମ କରିବାରେ ପ୍ରବୀଣ ସେମାନଙ୍କ ନିମନ୍ତେ ଆବଶ୍ୟକ

ମାର୍ଗ ଭାବେ) ବର୍ଣ୍ଣନା କରାଯାଇଛି ।

ଏହି ମାର୍ଗର ବିଶେଷତ୍ୱ ହେଲା, ସକଳ କର୍ମକୁ ଉପାସନା ମନେକରି ସେ ସମସ୍ତ କର୍ମ ମଧ୍ୟରେ ସଂହତି ପ୍ରତିଷ୍ଠା କରିବା । ଈଶାବାସ୍ୟ କହେ, ଯେଉଁମାନେ ବିଦ୍ୟାବିରୋଧୀ କର୍ମ କରନ୍ତି, ସେମାନେ ଅଜ୍ଞାନ, ଆଉ ଯେଉଁମାନେ ତନ୍ତ୍ରବିଦ୍ୟା ଅଧ୍ୟୟନ ଓ ଅଭ୍ୟାସରେ ସମୟ କାଟନ୍ତି ସେମାନେ ଆହୁରି ନ୍ୟୂନ, କାରଣ ସେମାନେ ଶକ୍ତି ଓ କୌଶଳ ହିଁ କାମନା କରିଥାନ୍ତି । ବିଦ୍ୟା ଦେବଲୋକକୁ ନିଏ, କର୍ମ ପିତୃଲୋକକୁ ନିଏ ବୋଲି କୁହାଯାଇଛି । ତେଣୁ ଯେଉଁ ଜ୍ଞାନ ଆତ୍ମସାକ୍ଷାତ୍‌କାର ପ୍ରଦାନ କରେ, ତାହା ଏସବୁ ଗୁଡ଼ିକଠାରୁ ସମ୍ପୂର୍ଣ୍ଣ ଭିନ୍ନ । ବିଦ୍ୟା ଓ କର୍ମ ସହ ଜ୍ଞାନର ସଂହତି ପ୍ରତିଷ୍ଠା କରିବା ସମ୍ଭବ ନୁହେଁ ।

ଅବଶ୍ୟ ଶାସ୍ତ୍ରର ବିରୋଧୀ କିଛି କର୍ମରେ ଆତ୍ମନିୟୋଗ କରିବା ଉଚିତ ନୁହେଁ ; ସମସ୍ତ କର୍ମର ଶେଷ ବ୍ୟାଖ୍ୟାନ ହେଲା ଅବିଦ୍ୟା । କର୍ମ ଖୁବ୍ ବେଶିରେ ମନକୁ ପରିଶୁଦ୍ଧ କରିପାରେ ଓ ଉପାସନା ମନକୁ ଏକାଗ୍ର କରିପାରେ । ଏହି ଉପାସନା ଊର୍ଦ୍ଧ୍ୱଗତ ହୋଇ ହିରଣ୍ୟଗର୍ଭ ବିଶ୍ୱରୂପଙ୍କ ଆରାଧନା ହେବା ଉଚିତ, ଏହା ପରିପକ୍ୱ ହୋଇ ଏହି ଜନ୍ମର ଅନ୍ତଃପୂର୍ବରୁ ଜୀବନ ମୁକ୍ତିରେ ପରିଣତ ହେବା ମଧ୍ୟ ଉଚିତ ।

ତେଣୁ ଦେବତାଜ୍ଞାନ ଓ କର୍ମନିଷ୍ଠା ପରସ୍ପର ପରିପୂରକ ଓ ସଂପୃକ୍ତ ହେଲେ ମଣିଷ ଜନ୍ମ-ମୃତ୍ୟୁର ଚକ୍ରରୁ ଉଦ୍ଧାର ପାଇ ଦେବତା ହୋଇପାରିବ ।

※ ※ ※

# ଆମ ପ୍ରକାଶିତ
# ସଂଗ୍ରହଣୀୟ ଉପନିଷଦ ଗ୍ରନ୍ଥାବଳୀ

- ପନିଷଦ ପରିଚୟ
- ଉପନିଷଦ ସଂଗ୍ରହ (ଭାଗ -୧ ରୁ ୬)
- ଶାଙ୍କରଭାଷ୍ୟ ଉପନିଷଦ ଗ୍ରନ୍ଥାବଳୀ
  (ଈଶା, କଠ, କେନ, ପ୍ରଶ୍ନ, ମୁଣ୍ଡକୋ, ମାଣ୍ଡୁକ୍ୟ, ଐତରୀୟ, ତୈତ୍ତିରୀୟ, ବୃହଦାରଣ୍ୟକ, ଛାନ୍ଦୋଗ୍ୟ ଓ ଶ୍ୱେତାଶ୍ୱେତର ..... ।)
- ଈଶାବାସ୍ୟୋପନିଷଦ
  (ଶଙ୍କର, ରାମାନୁଜ ଓ ମାଧବ ଭାଷ୍ୟ ସମେତ)







Aum Prakashana Mandir.
P.B.No - 31; PURI-752001; ORISSA.
Phone/Fax : 06752-220831.
e-mail : aum@sancharnet.in

